ସାହିତ୍ୟ ବଛାବଛି : ଲେଖକ—ଫଟୁରାନନ୍ଦ, ପ୍ରକାଶକ—ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨, ପ୍ରଥମ ମୁଦ୍ରଣ—୧୯୮୪, ଦ୍ୱିତୀୟ ମୁଦ୍ରଣ—୧୯୯୦, ମୁଦ୍ରକ—ଶ୍ରୀ ନୀଳକଣ୍ଠ ପ୍ରେସ, ବିଡାନାସୀ, କଟକ-୮ ।

SAHITYABACHHABACHHI : Author—Faturananda, Publisher—Sahadev Pradhan, Friends' Publishers, Binodbehari, Cuttack-753002, Orissa, ( India ), First Edition—1984, Second Edition—1990, Printer—Sri Nilakantha Press, Bidanasi, Cuttack—8. Price—16-00

# ଉତ୍ସର୍ଗ

**ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ କରକମଳେଷୁ !**

ମହାଶୟ,

ଆପଣ ଇଂରାଜୀ ସାହିତ୍ୟର ଶୀର୍ଷସ୍ଥାନରେ ଥାଇ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ଯେଉଁ ଦକ୍ଷତା ଦେଖାଇ ଅଛନ୍ତି, ତାହା ଅନବଦ୍ୟ । ଆପଣଙ୍କର ଗଳ୍ପଗୁଡ଼ିକ ମନମୁଗ୍ଧକର ଏବଂ ଚିତ୍ତାକର୍ଷକ । ସେଥିପାଇଁ ଆପଣ ଓଡ଼ିଆ ସାହିତ୍ୟର ସର୍ବଶ୍ରେଷ୍ଠ ପୁରସ୍କାର ସ୍ୱରୂପ ସାରଳା ପୁରସ୍କାର ଲାଭ କରିଅଛନ୍ତି । ଆପଣଙ୍କର ପ୍ରତ୍ୟେକଟି ଗଳ୍ପ ପଢ଼ିଲାବେଳେ ପାଠକ ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇପଡ଼େ । ଆପଣଙ୍କର ଏହି ଦକ୍ଷତାର ଆଦର ସ୍ୱରୂପ ଏହି କ୍ଷୁଦ୍ର ପୁସ୍ତକଖଣ୍ଡି ଆପଣଙ୍କ ହସ୍ତରେ ସମର୍ପଣ କଲି । ସାଦରେ ଗ୍ରହଣ କରିବେ ।

ଆପଣଙ୍କର ଗୁଣମୁଗ୍ଧ
ଫତୁରାନନ୍ଦ

# ଉପହାର

ଶ୍ରୀ/ଶ୍ରୀମତୀ.................... ..... ........................ .. ଙ୍କୁ

ଭକ୍ତି/ଶ୍ରଦ୍ଧା/ସ୍ନେହର ନିଦର୍ଶନ ସ୍ୱରୂପ ଉପହାର ଦେଲି ।

ସ୍ୱା ............... .........

ତା.........................

# ମୋ କଥା

ବାଣିଜ୍ୟେ ବସତେ ଲକ୍ଷ୍ମୀ
ତଦର୍ଦ୍ଧଂ କୃଷି କର୍ମଣି...

ଲକ୍ଷ୍ମୀ ତ ଟିକେହେଲେ ଦୃଷ୍ଟି ମୋ ଉପରେ ପକେଇଲେନି । ମୋତେ ଦେଖିଲେ ମୁହଁ ଆଡ଼େଇ ଚାଲିଗଲେ । ଆଉ କୋଉ ମୁହଁରେ ମୁଁ ବାଣିଜ୍ୟ କରନ୍ତି । ଆଗେ ସିନା ଥିଲା ବାଣିଜ୍ୟରେ ଲକ୍ଷ୍ମୀଙ୍କର; ଏବେ ଲକ୍ଷ୍ମୀଙ୍କ ଠାରେ ବାଣିଜ୍ୟ ବାସ । ଲକ୍ଷ୍ମୀ ତ ମୋର ସୀମା ମାଡ଼ନ୍ତି ନାହିଁ । ତେଣୁ ବାଣିଜ୍ୟ ବିଷୟ ଭାବିବା ମୋ ପକ୍ଷରେ ଏକ ହାସ୍ୟାସ୍ପଦ କଥା । ବାଣିଜ୍ୟର କଥା ବାଏଁ ବାଏଁ ଉଡ଼ିଗଲା । ତା ପର ଜଣକଟା ଅର୍ଥାତ୍ କୃଷିକର୍ମଟା ନଜରରେ ପଡ଼ିଲା । ଭାବିଲି ଚାଷ କାମଟା ହାତକୁ ନେବି । ରବି ବା ପନିପରିବା ଚାଷ ମୋ ହାତରେ ହବ ବା କୁଆଡ଼ୁ । ରବି ଓ ପନିପରିବା ଚାଷ ଯେ ବିଲ୍‌କୁଲ୍ କରି ନଥିଲି ଏମିତି ନୁହେଁ, ତାକୁ କିନ୍ତୁ ଓଲିଆ ଗାଈ ଓ ବୁଲାଷଣ୍ଢମାନେ ଉଜାଡ଼ି ଦେଲେ । ମନେ ମନେ ଠିକ୍ କରିନେଲି ସାହିତ୍ୟ ଚାଷ କରିବି । ସଙ୍ଗେ ସଙ୍ଗେ ଆରମ୍ଭ କରିଦେଲି । ଅନେକ ବନ୍ଧୁ ଏହାକୁ ଏକ ଅଭିନବ ଚାଷ ବୋଲି କହିଲେ । ପାଠକମାନଙ୍କର ଆଦର ପାଇ ବଢ଼ିଗଲି । ସାହିତ୍ୟର ଗଛ ସବୁ ଫଳିପଡ଼ିଲା । ସାହିତ୍ୟ ବେଉପାର ପୁଣି ଆରମ୍ଭ କରିଦେଲି । ଅନେକ ବନ୍ଧୁ କହିଲେ, ବେଉପାର ମନ୍ଦ ହୋଇନାହିଁ । ଏହାପରେ ବସ୍ତାବନ୍ଦି ଦରକାର । ସାହିତ୍ୟ ବସ୍ତାବନ୍ଦି ଆରମ୍ଭ କରିଦେଲି । କିନ୍ତୁ ପ୍ରକୃତ ବସ୍ତାବନ୍ଦି କଲେ 'ଡଗର'ର ଯୁଗ୍ମ ସମ୍ପାଦକ ବିଜୟାନନ୍ଦ ସିଂହ । ପ୍ରକାଶିତ ଗଳ୍ପଗୁଡ଼ିକ ମଧ୍ୟରୁ ସେ ବାଛି ବାଛି ବସ୍ତାବନ୍ଦି କାମଟାକୁ ପୂରଣ କରିଦେଲେ । ଏସବୁ କରିବାର ଧୈର୍ଯ୍ୟ ମୋର ନଥିଲା । ଏଥିପାଇଁ ପକ୍କା ସାହିତ୍ୟବତ୍ସଳ ବନ୍ଧୁ ବିଜୟାନନ୍ଦ ସିଂହଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଦେଉଅଛି ।

ମୋର ସାନଭାଇ ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର ମୁଦ୍ରଣ ପୂର୍ବରୁ ପାଣ୍ଡୁଲିପି ଅନେକ ସ୍ଥାନରେ ସଂଶୋଧନ କରି ଅଧିକ ସରସ କରିଥିବାରୁ ତାଙ୍କୁ ମୁଁ ସ୍ନେହାଶୀର୍ବାଦ ଦେଉଛି । ସବୁ ଗୋଟିଏ ପାଖେ ତ ଆଉ ପାଖରେ ଏକା ପ୍ରକାଶକ ଶ୍ରୀଯୁକ୍ତ ସହଦେବ ପ୍ରଧାନ ଜକଠକୁ ସମାନ କରି ଦେଇଛନ୍ତି । ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଦେଉଛି ।

ଏହାପରେ ସାହିତ୍ୟ ଅମଳ କରିବାର ବାସନା ରଖିଛି ।

ଚତୁରାନନ

# ସୂଚୀ

| ଗଳ୍ପ | ପୃଷ୍ଠା । |
| --- | --- |
| ୧ । ଅତ୍ୟାଧୁନିକ ଓଡ଼ିଆ ସାହିତ୍ୟର ଦାନ | ୧ |
| ୨ । ତୈଳଚିତ୍ର ସ୍ଥାପନ | ୮ |
| ୩ । କାମକଳ | ୧୫ |
| ୪ । ଓଡ଼ିଓପାଥି | ୨୨ |
| ୫ । ପାଣିଜସ୍ମୃତ୍ରୀ | ୨୭ |
| ୬ । ଦାନ୍ତ ସାହିତ୍ୟର ପୋକ୍ତୁହ୍ମ | ୩୨ |
| ୭ । ସଟ୍‌କଟିଆ ଢ଼ଜ୍‌ପଣ୍ଡା | ୩୯ |
| ୮ । ପଲ୍ଲୀପତନ | ୪୫ |
| ୯ । ସମ୍ମିଳନୀ ସଫଳେଇ | ୫୧ |
| ୧୦ । ସାହିତ୍ୟ ନଆଶରେ ଡାକ୍ତର | ୫୯ |
| ୧୧ । କର୍ତ୍ତା ଓ କୋବଭଜା | ୬୭ |
| ୧୨ । ସାହିତ୍ୟ ମାରୁଛ ସଫେଇ | ୭୪ |
| ୧୩ । ଓଲଟ ପାଲଟ କର | ୮୧ |
| ୧୪ । ଅଲବନ୍ତ ସଭାପଢ | ୮୪ |
| ୧୫ । ବଦଳେଇ ଭୂତ | ୯୦ |



# ଅତ୍ୟାଧୁନିକ ଓଡ଼ିଆ ସାହିତ୍ୟର ଦାନ

ରାସ୍ତା ଉପରେ ଦଳ ଦଳ ହୋଇ ଭେଣ୍ଡିଆମାନେ ଗୋଟାଏ ଆଡ଼େ ମୁହାଁଇଥିବାର ଦେଖି ରାସ୍ତାକଡ଼ ଦୋକାନରେ ବସିଥିବା ଲୋକମାନେ ନିଜ ନିଜ ଭିତରେ ଭୁବୁଟେକ କଥାବାର୍ତ୍ତା ହେବାକୁ ଲାଗିଲେ ।

ଜଣେ କହିଲା—ଏ ଭେଣ୍ଡିଆଗୁଡ଼ାକ କୁଆଡ଼େ ଅସମ୍ଭାଳ ହୋଇ ଧାଇଁଛନ୍ତି ?

ଆଉ ଜଣେ କହିଲା—ଏମାନେ କଲେଜଛାତ୍ର । କୁଆଡ଼େ ଧପାଇଛନ୍ତି କେଜାଣି ?

ପୂର୍ବଜଣକ କହିଲା—କୋଉଠି ଗୋଟାଏ ଗଣ୍ଡଗୋଳର ମଞ୍ଜି ପୋତା ହୋଇଛି ବୋଧହୁଏ । ଏମାନେ ପାଣି ଛିଞ୍ଚିବାକୁ ଯାଉଛନ୍ତି ।

—ନାହିଁ ହୋ । କେତେଜଣ ଜଣାଶୁଣା ସାହିତ୍ୟିକ ବି ସେଇଆଡ଼େ ଧପାଇଛନ୍ତି । ସେମାନେ କଅଣ ଗଣ୍ଡଗୋଳ ଭିଆଇବାକୁ ଯାଉଛନ୍ତି ?

—ବୁଢ଼ାବୁଢ଼ା ସାହିତ୍ୟିକମାନେ ସିନା ଗଣ୍ଡଗୋଳ କରିବାକୁ ଅସମର୍ଥ, ହେଲେ ଭେଣ୍ଡିଆ ସାହିତ୍ୟିକମାନେ ଯେଉଁଠି ଏକଜୁଟ୍ ହେବେ ସେଠି ଗଣ୍ଡଗୋଳ ସୁନିଶ୍ଚିତ ।

—ଜଣାପଡ଼ୁଛି ଗୋଟାଏ ସାହିତ୍ୟର ମଢ଼ା କୋଉଠି ପଡ଼ିଛି । ଏ ସାହିତ୍ୟିକ ଶାଗୁଣାମାନେ ଅସ୍ତବ୍ୟସ୍ତ ହୋଇ ଛୁଟିଛନ୍ତି । ଓଃ ! ମଢ଼ାଉପରେ କୁଦାପଡ଼ି ତାକୁ କେଲେଇ ପକେଇବେ । କେଁ-କଟର ରଡ଼ିରେ ଥାନାଟାକୁ କମ୍ପେଇ ଦେବେ. ମଢ଼ାଟାକୁ ସମ୍ପୂର୍ଣ୍ଣ ବଦାର ଟିକିଟିକି ନକରିବା ଯାଏ ସେମାନଙ୍କର ବାହାର ହେବ ନାହିଁ । ମଢ଼ାକୁ ଏମିତି ଟିକିଟିକି କରି ଛିଣ୍ଡେଇଲା ବେଳେ ନିଜ ନିଜ ଭିତରେ ବି ଖିମ୍ପାଖିମ୍ପି, ନଖ ମରାମରି ହୋଇଯାଆନ୍ତି । ଏମାନଙ୍କର କନ୍ଦଳ ଦେଖିବାକୁ ବଡ଼ ମଜା ଲାଗେ । ଶାଗୁଣାମାନଙ୍କର ମଢ଼ା କେଲେଇବା ଦେଖିଲେ ଦର୍ଶକମାନଙ୍କର ଦେହ ଶିର୍ ଶିର୍ ହୋଇଉଠେ । ଘୃଣାରେ ସେମାନଙ୍କର ନାକ ଟେକ ହୋଇଯାଏ, କିନ୍ତୁ

ସାହିତ୍ୟିକ ଶାଗୁଣାମାନଙ୍କର ସାହିତ୍ୟ ମଢ଼ କେଲେଇବାଟାକୁ ଦର୍ଶକମାନେ ଉପଭୋଗ କରନ୍ତି । ଗିରଗିର କିଛି ଦୁଇଟା ମାରଣାଷଣ୍ଢଙ୍କୁ ମୁହାଁମୁହିଁ ଲଗାଇ ଲଢ଼େଇ ଲଗେଇ ଦେଲାପରି ସେମାନେ ଦୁଇ ସାହିତ୍ୟିକଙ୍କୁ ମୁହାଁମୁହିଁ କରାଇ ବେଶ୍ ଆନନ୍ଦ ପାଆନ୍ତି । ଦୁଇ ଦଳ ହୋଇଯାଇ ସେମାନେ ଦୁଇ ସାହିତ୍ୟିକଙ୍କ ପଛଆଡ଼ୁ ଅଣ୍ଡାନ୍ତି । ଗୋଟାଏ ଦୋକାନରେ ବସିଥିବା ଦ'ଜଣ ଲୋକ ଏମିତିଆ ମଉଜପାଇବା ଲାଗି ଅସମ୍ଭାଳ ହୋଇ ଧପାଉଥିବା ଦଳେ ଭେଣ୍ଡିଆଙ୍କ ପଛେ ପଛେ ଧାଇଁଲେ । ସମସ୍ତେ ଯାଇ ଶ୍ରୀରାମଚନ୍ଦ୍ର ଭବନରେ ରୁଣ୍ଡ ହେଲେ ।

କୌଣସିଠାରେ ଭୋଜିଭାତ ଥିଲେ ସେଠାରେ ଯେପରି ନିମନ୍ତ୍ରିତ ଓ ଆମନ୍ତ୍ରିତ ଲୋକେ ରୁଣ୍ଡହୋଇ ହାଉ ହାଉ, ରାଉ ରାଉ ହୁଅନ୍ତି, ଶ୍ରୀରାମଚନ୍ଦ୍ର ଭବନରେ ସେମିତି ଲୋକେ ରୁଣ୍ଡ ହୋଇ ହାଉହାଉ ହେଉଥାଆନ୍ତି । ଯେଉଁ ଗୋଡ଼ାଣିଆ ଦ'ଜଣ ଭେଣ୍ଡିଆମାନଙ୍କ ପିଚ୍ଛାଧରି ଆସିଥିଲେ, ସେମାନେ ସଭାର ବିଷୟଟା କଅଣ କିଛି ଠଉରେଇ ପାରୁନଥାନ୍ତି । ଗୀତ କିଏ ଗାଇବ, କିଏ ନାଚିବେ, କେତେଜଣ ନାଚିବେ, ଜଳଖିଆ ବ୍ୟବହାର ବ୍ୟବସ୍ଥା ଅଛି କି ନାହିଁ, 'ଷେଣ୍ଢପୁରେଇ ମହାପାତ୍ରେ' ଆସିଛନ୍ତି କି ନାହିଁ ସେହିସବୁ ଚର୍ଚ୍ଚା ଚାରିଆଡ଼େ ଚାଲିଥାଏ । ବିଷୟବସ୍ତୁ କଥା ପଚାରେ କିଏ ।

ଘଣ୍ଟାକଣ୍ଟା ଓ ମିନଟ୍‌କଣ୍ଟା ଠିକ୍ ଏକାଠି ହେଲାମାତ୍ରେ ସଭାପତି ମହାଦେବ ମିଶ୍ରଙ୍କ ଗାଡ଼ି ଫାଟକ ପାଖରେ କଅଁ କଅଁ ଶବ୍ଦ କରି ଅଟକିଲା । ସେ ଉଦ୍ୟୋକ୍ତାମାନଙ୍କ ଗହଣରେ ଯାଇ ସଭାସ୍ଥଳରେ ବିଜେକଲେ ।

ରହୁଁ ରହୁଁ ସଭାକାର୍ଯ୍ୟ ସୁରୁ ହୋଇଗଲା । ସବାଶେଷରେ ସଭାପତିଙ୍କ ମୁହଁରୁ ବିଷୟବସ୍ତୁଟା ଗୁଲ୍ କରି ଗଳିପଡ଼ିଲା । ସେତେବେଳେ ଯାଇ ଗୋଡ଼ାଣିଆ ଦ'ଜଣ ଜାଣିପାରିଲେ ଯେ ବିଷୟବସ୍ତୁଟା ହେଉଛି, "ଭାରତୀୟ ସାହିତ୍ୟକୁ ଓଡ଼ିଆ ସାହିତ୍ୟର ଦାନ" ।

ଗୋଡ଼ାଣିଆ ଦ'ଜଣ ମୁଣ୍ଡ କୁଣ୍ଡେଇଲେ । କଥା କଅଣ ? ଏଠି ଦାତା ହେଉଛି ଓଡ଼ିଆ ସାହିତ୍ୟ ଆଉ ଦାନୁଆ ହେଉଛି ଭାରତୀୟ ସାହିତ୍ୟ । ଏ ତ କିଛି କମ୍ ବଡ଼ ଗୌରବର କଥା ନୁହେଁ । ଓଡ଼ିଆ ସାହିତ୍ୟ ହାତଟେକ ଦେଇଛି ଆଉ ଭାରତୀୟ ସାହିତ୍ୟ ତଳେ ହାତପାତି ନେଇଛି । ହାୟ, ହାୟ, ଆମଠୁ ବଳି ହତଭାଗା ଆଉ ଦୁନିଆରେ କେହି ନାହାନ୍ତି । ଆମ ସାହିତ୍ୟର ଟେକ ଆମେ ଯାହା ଜାଣିପାରୁ ନାହୁଁ ଆଜିଯାଏ । ଯାହାହେଉ, ଏତେଦିନେ ଆମେ ଜାବତ ଭାଗା (ଯେପରି ହତଭାଗା) ହୋଇଯିବା ।

ପ୍ରାରମ୍ଭିକ ଟୁଟୁରୁମୁଟୁରୁ କାମ ସାରିବା ପରେ ସଭାପତି ଦାଡାଦାନୁଆଙ୍କ ବିଷୟରେ କିଛି କହିବାକୁ ଆଫଗାନ ପଟ୍ଟନାୟକଙ୍କୁ ଅନୁରୋଧ କଲେ । ସେପିଲ୍ଲା-ରହେମାନ୍ ଓ ରହିମ୍ କହି ଆଫଗାନ ପଟ୍ଟନାୟକ ଆରମ୍ଭକଲେ, ଦାନୁଆ ଦାତା ପ୍ରସଙ୍ଗ ଉଠିଲେ ଆମକୁ ଅତି ପ୍ରାଚୀନ କାଳକୁ ଖସିଯିବାକୁ ହେବ । ସେସବୁ ଏବର କାଳରେ ଖୋଜି ବସିଲେ ହତାଶ ହେବାକୁ ପଡ଼ିବ । ବାପ ମଲା ପରେ ପୁଅମାନେ ଭିନ୍ନେ ଭିନ୍ନେ ହୋଇଗଲା ପରି ତେର ଚଉଦଟା ଭାଷା ଅଲଗା ଅଲଗା ହୋଇ କେହି କାହା ମୁହଁ ଚାହୁଁ ନାହାନ୍ତି । ଏଠି ଦାନର ପ୍ରଶ୍ନ ନାହିଁ । କିଏ କାହାଠୁ କଅଣ ଚୋରି କରି ନେଇଛି ସେଇଟାର ଜୋର୍‌ସୋର୍ ଆଲୋଚନା ଚାଲେ । ମଗାମଗି କଣାକଣି ଅବଶ୍ୟ ଚାଲିଛି, ହେଲେ ସେଇଟା ଆଶିଦ୍ଦୃଶିଆ ନୁହେଁ, ଏଠାରେ ଦାନୁଆ ଦାତାର ପ୍ରଶ୍ନ ବିଲକୁଲ ଉଠୁନି । ଅତି ପ୍ରାଚୀନ କାଳରେ ଭାରତରେ ଗୋଟିଏ ସାହିତ୍ୟ ଥିଲା । ସେଇଟା ହେଲା ସଂସ୍କୃତ ସାହିତ୍ୟ । ସେଇଟା ଭାରତର କୋଠସାହିତ୍ୟ ଥିଲା ।

ସବୁ ଅଞ୍ଚଳର ସାହିତ୍ୟିକମାନେ ସଂସ୍କୃତରେ ସାହିତ୍ୟ ଲେଖି କୋଠସାହିତ୍ୟକୁ ପରିପୁଷ୍ଟ କରୁଥିଲେ । ଯଦିଓ କଥାବାର୍ତ୍ତାରେ ନିଜ ଭାଷା ବ୍ୟବହାର କରୁଥିଲେ । ଆଞ୍ଚଳିକ ଭାଷାରେ ଲେଖିବାର ପ୍ରଶ୍ନ ଉଠୁ ନଥିଲା । ସେଥିରେ ଲେଖିଲେ ତାହା ସାହିତ୍ୟ ପଦବାଚ୍ୟ ହେଉ ନ ଥିଲା । ସାହିତ୍ୟିକମାନେ ତାକୁ ଘୃଣାଚକ୍ଷୁରେ ଦେଖୁଥିଲେ । ଏଣୁ ସବୁ ଅଞ୍ଚଳର ସାହିତ୍ୟିକମାନେ ସଂସ୍କୃତରେ ଲେଖି କୋଠ ଭାରତୀୟ ସାହିତ୍ୟକୁ ଦାନ କରୁଥିଲେ । ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ଆମକୁ ଦେଖିବାକୁ ହେବ ସେତେବେଳେ ଓଡ଼ିଶାର ସାହିତ୍ୟିକମାନେ କି କି ସାହିତ୍ୟ ରଚନା କରି କୋଠ ଭାରତୀୟ ସାହିତ୍ୟରେ ଭରଣା କରିଥିଲେ ।

ଏହି ଦୃଷ୍ଟିକୋଣରୁ ଦେଖିଲେ ଆପଣମାନେ ଦେଖିବେ ଓଡ଼ିଆ କବି ଜୟଦେବଙ୍କର 'ଗୀତ ଗୋବିନ୍ଦ' ଭାରତୀୟ ସାହିତ୍ୟକୁ ଏକ ଅମୂଲ୍ୟ ଦାନ ।

ସଭା ଭିତରୁ ଜଣେ କିଏ ଚିଲେଇ ଉଠିଲା—ଜୟଦେବ ଓଡ଼ିଆ ନୁହନ୍ତି, ସେ ହେଉଛନ୍ତି ଆଗ୍ ମାର୍କା ବଙ୍ଗାଳୀ ।

ବାସ, କୁଆ ବସାରେ ଢେମଣାଟା ପଶିଗଲା ପରି । ହୋ-ହାରେ ଘର ଫାଟିଗଲା । ଖୁରିଆଡ଼ୁ ଶୁଭିଲା ବଙ୍ଗାଳୀର ଦଲାଲ ଚୁପ୍‌କର । ଗୋଇନ୍ଦାମାନୁ ଦୂର ହୁଅ, ଖାଲୁକର କଲିକତାରେ ! ଓଡ଼ିଶାଦ୍ରୋହୀ ସାବଧାନ ।

ସଭାପତିଙ୍କ ଅକ୍ଳାନ୍ତ ପରିଶ୍ରମରେ ସଭାସ୍ଥଳ ଶାନ୍ତ ହେଲା । ଆଫଗାନ ପଟ୍ଟନାୟକ ପୁଣି କହିବାକୁ ଲାଗିଲେ ଏମିତି ଅସହିଷ୍ଣୁ ହେବା ଉଚିତ୍ ନୁହେଁ, ଏପରି ଅରୁଚିକର

ଭାଷା ପ୍ରୟୋଗ ମଧ୍ୟ ଉଚିତ ନୁହେଁ । ଜୟଦେବ ଯେଉଁ ଭାଷାରେ ଲେଖିଛନ୍ତି ତାହା ବଙ୍ଗଳା ନୁହେଁ କି ଓଡ଼ିଆ ନୁହେଁ । ସୁତରାଂ ଏ ବିଷୟରେ ଉକ୍ତି ହୋଇପଡ଼ିବା ଅନୁଚିତ । ସାହିତ୍ୟିକ କଳି ସ୍ମରଣୀୟ, କାରଣ ଏଥିରୁ ସାରକଥା ବାହାରେ । କିନ୍ତୁ ଏହା ଉଚ୍ଛୃଙ୍ଖଳତା ଭିତରକୁ ଯେପରି ନଯାଏ ତାହା ସାହିତ୍ୟିକମାନଙ୍କର ଦେଖିବା ଦରକାର । ଶୁଣିଥିବ ସେ କଥା । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବ୍ୟାକରଣକାର ମହର୍ଷି ପାଣିନି ଜଣେ ଓଡ଼ିଆ । ପାଣିନି ବ୍ୟାକରଣ କେବଳ ଭାରତ ନୁହେଁ ପୃଥିବୀକୁ ଏକ ଅଲୌକିକ ଦାନ । ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ ଦର୍ପଣ' ଭାରତୀୟ ସାହିତ୍ୟକୁ ଆଉ ଏକ ଦାନ । ସେହିପରି ଜଗନ୍ନାଥ ମିଶ୍ରଙ୍କ 'ରସ କଳ୍ପଦ୍ରୁମ' ଭାରତୀୟ ସାହିତ୍ୟକୁ ଆଉ ଏକ ଅମୂଲ୍ୟଦାନ । ଓଡ଼ିଶାରେ ଯେତେ ପଣ୍ଡିତ ଭାରତୀୟ ସାହିତ୍ୟକୁ ମୂଲ୍ୟବାନ ଦାନ ଦେଇଛନ୍ତି ସେ ସମସ୍ତଙ୍କ ବିଷୟ ଏଠି କହିବାକୁ ସମୟ ନାହିଁ । ସଂସ୍କୃତ ସାହିତ୍ୟକୁ ଓଡ଼ିଆ ପଣ୍ଡିତମାନଙ୍କର ଦାନ ବିଷୟରେ ଏକାଡ଼େମି ଗୋଟିଏ ବହି ପ୍ରକାଶ କରିଛନ୍ତି, ତାହା ଦେଖନ୍ତୁ ।

ଆଫଗାନ ପଟ୍ଟନାୟକ ଏହିପରି କହି କହି ହାଫେଇ ଯିବାରୁ ଧନ୍ୟବାଦ ଦେଇ ବସିପଡ଼ିଲେ ।

ଅନ୍ୟ ଜଣେ ବକ୍ତା ଉଠି କହିଲେ—ଅଳପ ହେଲେ ବି ଓଡ଼ିଆ ଭାଷାର ସାହିତ୍ୟ ଅନ୍ୟାନ୍ୟ ଭାଷାର ସାହିତ୍ୟକୁ ମଧ୍ୟ ଦାନ ଦେଇଛି । ଏଇ ଦେଖନ୍ତୁ' କାହ୍ନୁପା, ଶବରୀପା, ଲୁଇପାମାନେ ଯେଉଁ ବୌଦ୍ଧଗାନ ଦୋହା ଲେଖିଦେଇ ଯାଇଛନ୍ତି ତାକୁ ବଙ୍ଗାଳି, ବିହାରୀ ଓ ଆସାମୀମାନେ ନିଜର କରି ନେଇଛନ୍ତି । ଏମାନେ ଆଦି ଓଡ଼ିଆ ଭାଷାର କବି । ଏମାନଙ୍କର ଆଶ୍ରମ ମୟୂରଭଞ୍ଜର ପର୍ବତ ଗୁମ୍ଫାମାନଙ୍କରେ ଏପର୍ଯ୍ୟନ୍ତ ପୂଜା ପାଉଛି । ଜଗନ୍ନାଥ ଦାସଙ୍କ ଭାଗବତ, ସାରଳା ଦାସଙ୍କ ମହାଭାରତକୁ ମଧ୍ୟ ନେଇ ବଙ୍ଗଳାରେ ପୂରେଇଛନ୍ତି ।

ଏତିକବେଳେ ପୁଣି କିଏ ଜଣେ କହିଦେଲା—ଖାଲି ପୁରୁଣା କଥାଗୁଡ଼ାଏ କହିଲଗିଛ । ଆମ ଅଞ୍ଚଳରେ କିଛି ସାହିତ୍ୟିକଙ୍କ ଦାନକଥା କହୁନ କାହିଁକି ?

ବକ୍ତା କହିଲେ, ମୋ ଜାଣିବାରେ ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି, ସୁରେନ୍ଦ୍ର ମହାନ୍ତି ଓ କାଳିନ୍ଦୀ ପାଣିଗ୍ରାହିଙ୍କ କେତେକ ବହି କେନ୍ଦ୍ର ସାହିତ୍ୟ ଏକାଡେମି ବିଭିନ୍ନ ଭାଷାରେ ଅନୁବାଦ କରିଛନ୍ତି । ଏହାକୁ ଆପଣମାନେ ଦାନ ବୋଲି ଗ୍ରହଣ କରିବେ ।

ପ୍ରଶ୍ନକର୍ତ୍ତା ଟିକିଏ ଉତ୍ତେଜିତ ହୋଇପଡ଼ି କହିଲେ, ଇଏତ ସେହି ବୁଢ଼ାମାନଙ୍କ ପୁରୁଣା ପୋଥି । ଅତ୍ୟାଧୁନିକ କବି ଓ ଲେଖକମାନେ କଅଣ ଗାଧୋଇ ଗଲେ ?

ବକ୍ତା ଟିକିଏ ଅସନ୍ତୁଷ୍ଟ ହୋଇ ମଞ୍ଚରୁ ଓହ୍ଲାଇ ଆସିବା ପରେ ଷଣ୍ଢପୁରେଇ ମହାପାତ୍ର ମଞ୍ଚକୁ ଯାଇ କହିଲେ, କିଏ କହେ ଅତ୍ୟାଧୁନିକ ଲେଖକମାନଙ୍କର ଓଡ଼ିଆ ସାହିତ୍ୟକୁ ଦାନ ନାହିଁ । ସିଏ କହେ ସିଏ ଗଜମୂର୍ଖ ।

ଘର ଭିତରେ ତାଳିର ଖଇଫୁଟିଲା । ବକ୍ତା କହିଲେ—ଅତ୍ୟାଧୁନିକ କବି ଲେଖକମାନଙ୍କର ଦାନ ଅମୂଲ୍ୟ ଓ ଅତୁଳନୀୟ ମଧ୍ୟ । ଅତୁଳନୀୟ କହିବାର ଉଦ୍ଦେଶ୍ୟ ହେଲା—ଅନ୍ୟ କୌଣସି ଭାଷାରେ ଏପରି ଦାନ ଭାରତୀୟ ସାହିତ୍ୟକୁ ନାହିଁ ।

ଆହୁରି ଜୋର୍‌ରେ ତାଳିପଡ଼ିଲା । କେତେଜଣ ଭେଣ୍ଟିଆ ଅତି ପ୍ରବଳ ଭାବରେ ଅନ୍ୟମାନଙ୍କୁ ତାଳିମାରିବାକୁ ଅନୁରୋଧ କରିବାରୁ ସେମାନେ ତାଳିମାରିବା ନିରାପଦ ଭାବି ତାଳିମାରିଲେ । ଫଳରେ ତାଳିଟା ବହୁତ ସମୟ ଧରି ଚାଲିଲା । ତାହା ବନ୍ଦ ହେବାରୁ ବକ୍ତା ପୁଣି ଆରମ୍ଭକଲେ—ଆଜିକାଲି ଜୀବନ ସଂଗ୍ରାମ ଏତେ ବଢ଼ିଗଲାଣି ଓ ଲୋକେ ଜୀବିକା ଅର୍ଜନରେ ଏତେ ସମୟ ଓ ଶ୍ରମ ବିନିଯୋଗ କଲେଣି ଯେ ଲୋକେ କବି ଓ ଲେଖକମାନଙ୍କୁ ଏବଂ କବି ଲେଖକମାନେ ପରସ୍ପରକୁ ଚିହ୍ନିବାକୁ ସମୟ ପାଉନାହାନ୍ତି ।

ପ୍ରଥମେ ଦେଖିବାର କଥା, ଆଜିକାଲି ସାହିତ୍ୟ ଅଛି କୋଉଠି, ବିଶେଷତଃ ଭାରତୀୟ ସାହିତ୍ୟ ଅଛି କେଉଁଠି । ଆଜିକାଲି ପ୍ରତ୍ୟେକ ବିଷୟ ପାଇଁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷିତ ହୋଇ ରହିଛି । ଯେପରି ଲୁଗା ପାଇଁ ମାରୁଆଡ଼ିପଟି, ବହି ପାଇଁ ବାଲୁବଜାର, ବିନୋଦବିହାରୀ, କଳକବ୍ଜା ପାଇଁ ବକ୍ସିବଜାର, କାଠକାମ ପାଇଁ ପିଠାପୁର, ପରିବା ଓ ଫଳ ପାଇଁ ଛତାବଜାର ରହିଛି ଠିକ୍ ସେହିପରି ସାହିତ୍ୟ ପାଇଁ ସାହିତ୍ୟ ଏକାଡେମୀ ରହିଛି । ଭାରତୀୟ ସାହିତ୍ୟ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ରହିଛି । ଭାରତୀୟ ସାହିତ୍ୟର ଲାଳନପାଳନ ଓ ସ୍ୱାସ୍ଥ୍ୟରକ୍ଷା ଏହି କେନ୍ଦ୍ର ସାହିତ୍ୟ ଏକାଡେମୀ କରେ । ଆଞ୍ଚଳିକ ସାହିତ୍ୟ ଏକାଡେମୀ ହେଉ ବା କବି ଲେଖକ ହୁଅନ୍ତୁ, ସେମାନଙ୍କ ଦାନ ଖଇରାତ ଏହି କେନ୍ଦ୍ର ସାହିତ୍ୟ ଏକାଡେମୀ ଗ୍ରହଣ କରେ । ଏଠି ବର୍ଷକୁ ଥରେ କିଏ କଅଣ ଦାନ ଖଇରାତ କରିଛି ସେ ବିଷୟ ନଥିପତ୍ରରୁ କଢ଼ାଯାଇ ଚର୍ଚ୍ଚା ହୁଏ । ସେଠି ସବୁ ଅଞ୍ଚଳର କବି ସାହିତ୍ୟିକମାନଙ୍କ ଅଲଗା ଅଲଗା ବସ୍ତାନି ଅଛି । ସେହି ସେହି ଅଞ୍ଚଳର ସାହିତ୍ୟିକମାନଙ୍କ ଦାନ ସେହିସବୁ ଅଞ୍ଚଳ ପାଇଁ ନିର୍ଦ୍ଦିଷ୍ଟ

ବସ୍ତାନରେ ରଖାଯାଏ । ଆମ ସାହିତ୍ୟିକମାନଙ୍କର ଦାନ ଯେ ସମସ୍ତଙ୍କ ଅପେକ୍ଷା ବେଶି, ତାର ସୁସ୍ପଷ୍ଟ ପ୍ରମାଣ ମୋ ପାଖରେ ଅଛି । ମୋତେ ଗାଲୁଆ ମାଲୁଆ କଥା କହି ଆସେନା । ମୁଁ ଯାହା ନ ଦେଖିଥିବି ତାହା କେବେହେଲେ ଆନ୍ତ କାହାକୁ କହିବି ନାହିଁ । ସ୍ୱାଠୁ ତାଠୁ ଶୁଣୁଥିଲି, ବର୍ଷେ ମୁଁ ନିଜେ ଜଣେ କେନ୍ଦ୍ରିଅଙ୍କ ସାଙ୍ଗରେ ତାଙ୍କ ଅଫିସକୁ ଗଲି । ସବୁ ବସ୍ତାନ ଠୁଳ କରାଗଲା । ଯାହା ଦେଖିଲି, ସେଥିରେ ମୋ ଆଖି ଖୋସି ହୋଇଗଲା । କୌଣସି ଅଞ୍ଚଳର ବସ୍ତାନ ଦୁଇ ଇଞ୍ଚରୁ ଅଧିକ ନଥିଲା । ଆମ ଅଞ୍ଚଳର ବସ୍ତାନ କିନ୍ତୁ ଥିଲା ଫୁଟେ ପାଖାପାଖି । ଆମ ଅଞ୍ଚଳର ଦାନ ଯେ ସବୁଠାରୁ ବେଶି ତାହା ଦେଖି ମୋ ମନ ଫୁଲେଇ ଉଠିଲା । ମନ ମୋର କୁନ୍ଦେମୋଟ ହୋଇଗଲା । ସମସ୍ତେ ଦେହ ବସ୍ତାନକୁ ଖୋଲିଲେ । ଦ'ସ୍ତରଜଣ ତହିଁରେ ଥିବା କାଗଜଗୁଡ଼ିକ ବାଛି ଅଲଗା ଅଲଗା କରି ରଖିଲେ । ଜଣେ ଘୋଷକ ଗୋଟିଏ ଗୋଟିଏ ଥାକଧରି ଦାନ ବିଷୟ ପଢ଼ିବାକୁ ଲାଗିଲେ—ଏ ଦାନଟି ହେଲା ଅମୁକ କବିଙ୍କର । ସେ ଅମୁକ କବିଙ୍କର ବିରୁଦ୍ଧରେ ନାନା କୁତ୍ସାରଟନା କରି ତାଙ୍କୁ ଏକାଡେମି ପୁରସ୍କାର ନ ଦେବାଲାଗି ଲେଖିଛନ୍ତି । ଏ ଥାକର ସମସ୍ତ ଦାନ ହେଲା ଜଣଜଣ ଭାଇ ବଶ ଓ ସାହିତ୍ୟିକଙ୍କ ବିରୁଦ୍ଧରେ କୁତ୍ସାରଟନା ଓ ପୁରସ୍କାର ନ ଦେବାର ବାରଣପତ୍ର । ଏକପ୍ରକାର ସମସ୍ତେ ସମସ୍ତଙ୍କ ବିରୁଦ୍ଧରେ ଲେଖିଛନ୍ତି । ଏହାକୁ କାର୍ଯ୍ୟକାରୀ କରାଗଲେ ଜଣାଯିବ ଓଡ଼ିଶାରେ କ'ଣ ଲେଖକ ନାହାନ୍ତି ।

ଏ ଥାକ ହେଲା ଆତ୍ମପ୍ରକାଶ । ସବୁଥିରେ ଗୋଟିଏ କଥା । ଦାତା ଜଣେ ମସ୍ତବଡ଼ କବି ବା ଲେଖକ । ତାଙ୍କପ୍ରତି ଅସୂୟା ପରବଶ ହୋଇ ସମୀକ୍ଷକମାନେ ଜାଣିଶୁଣି ତାଙ୍କ ବହିକୁ ବର୍ଜନ କରନ୍ତି । ସେ କେବଳ ଏଇଠାରେ ନ୍ୟାୟ ପାଇବେ ।

ଅନ୍ୟ ଗୋଟିଏ ଥାକରେ ଥିଲା 'ଓଡ଼ିଶା ସମୀକ୍ଷକମଣ୍ଡଳୀଙ୍କ ସତ୍ୟସ୍ୱରୂପ ହୁଙ୍କାର । କିଏ ପିଲାଦିନେ ପରୀକ୍ଷାରେ କପି କରି ବହିଷ୍କୃତ ହୋଇଥିଲେ, କିଏ ସରକାରୀ ତହବିଲ୍ ତୋଷରଫ୍‌ରେ ଦଣ୍ଡିତ ହୋଇଥିଲେ—ଦୁହେଁଯାକ କୌଣସି ପ୍ରକାରରେ ରକ୍ଷା ପାଇଯାଇଛନ୍ତି । ଏହିପରି କିଏ ନାରୀଧର୍ଷଣ, ହତ୍ୟାଉଦ୍ୟମ, ପ୍ରତିହାପ୍ରୀତି ଶୋଷଣ ଓ ଘୁଷ ଗ୍ରହଣରେ ଦଣ୍ଡିତ ସୁତରାଂ ସେମାନଙ୍କର ବିଚାର ଗ୍ରହଣଯୋଗ୍ୟ ନୁହେଁ । ଆଶ୍ୱାସନାର ବିଷୟ ଯେ ଏହି ଦାତାମାନଙ୍କ ଭିତରେ କୌଣସି ଗଣ୍ୟମାନ୍ୟ ଲେଖକଙ୍କ ନାମ ନଥିଲା । ଗଣ୍ୟମାନ୍ୟ ଲେଖକମାନେ ଏମିତିଆ ଦାନ ଦେବେ କୁଆଡ଼ୁ । ସେମାନେ ମହାକାମୀ । ହାତଖୋଲି ଏମିତିଆ ଦାନଦେବା ସେମାନଙ୍କ ଧାତକରେ ନାହିଁ । ସେମାନଙ୍କ ଗର୍ବ କିଛି କମ୍ ନୁହେଁ । ଯାହାହେଉ, ସେହିସବୁ ଦାତାମାନଙ୍କ ଦାନରେ କେନ୍ଦ୍ରିୟମାନେ କୃତକୃତ୍ୟ ହୋଇଗଲେ । ସନ୍ତୋଷରେ

ସେମାନଙ୍କ ମୁହଁରୁ କୁରୁକୁରିଆ ହସ ନିଗିଡ଼ି ପଡ଼ିଲା । ଆଉ କୌଣସି ଅଞ୍ଚଳର କବି ଲେଖକ ଏପରି ଅତୁଳନୀୟ ଦାନ ଦେଇ ନ ଥିଲେ । ଯଦିବା ଭୁଲଚକ୍ରରେ ଜଣେଅଧେ କିଏ ଦେଇଥିବେ ତେବେ ତାହା ଏତେ ନଗଣ୍ୟ ଯେ ତାହା କାହାରି ଦୃଷ୍ଟିକୁ ଆସିନଥିବ । ଅତ୍ୟାଧୁନିକ ଯୁଗର ଓଡ଼ିଆ ସାହିତ୍ୟ ଏଇ ଯୋଉ ଅମୂଲ୍ୟଦାନ ଦେଇଛି, ତାର ପଟାନ୍ତର ନାହିଁ । ମୋର ପୂର୍ବବର୍ତ୍ତୀ ବକ୍ତାଗଣ ଏହା ଉଲ୍ଲେଖ ନ କରିବା ଦ୍ୱାରା ସ୍ୱୀୟ ଅଜ୍ଞତାର ପରିଚୟ ଦେଇଛନ୍ତି ।

ଷଣ୍ଢପୁଡ଼େଇ ମହାପାତ୍ରଙ୍କ ବକ୍ତୃତା ସରିଲାବେଳକୁ ଘରଟି ପ୍ରାୟ ଶୂନ୍ୟପଡ଼ି ଆସିଥିଲା । ପ୍ରଥମ ଧାଡ଼ିରେ ଗଣ୍ୟମାନ୍ୟ କେତେକ ଲେଖକ ବସି ମୁରୁକିହସା ଦେଉଥିଲେ । ବୋଧହୁଏ ଲଜ୍ଜିତ ହୋଇଯାଇଥିଲେ ।

—※—

# ତୈଳଚିତ୍ର ସ୍ଥାପନ

ମିନିବସ୍‌ରେ ଯାତ୍ରୀ ଖୁନ୍ଦାହେଲା ପରି ଶ୍ରୀରାମଚନ୍ଦ୍ର ଭବନରେ ମୃତ କବି-ମାନଙ୍କର ତୈଳଚିତ୍ର ଖୁନ୍ଦା ହେବାକୁ ଲାଗିଲା । ମିନିବସ୍‌ରେ ଖୋଦ୍ ଯାତ୍ରୀମାନେ ରଡ଼ି ଛାଡ଼ନ୍ତି—ଏ-ହେ, ଇଏ କଅଣ, ଇଏ କଅଣ ! ଆମେ ହେଲୁ ମଣିଷ ନା କୁଣ୍ଡାବସ୍ତା । ବ୍ୟବସାୟୀ ଯିମିତି ଗୋଦାମ ଘର ଭିତରେ ବେଶି କୁଣ୍ଡାବସ୍ତା ରଖିବାକୁ ଚପିଚୁପି ହଲାଇ ଦିଏ । ସେମାନଙ୍କର ଜୀବନ ନ ଥାଏ ବୋଲି ସେମାନେ ଚପିଚୁପି ହୋଇ ରହିଯାଆନ୍ତି । ଆମେ କୁଣ୍ଡାବସ୍ତା ନୋହୁଁ । ଆମର ଜୀବନ ଅଛି । ଆମେ ଅଧୋଃଶ୍ୱାସୀ ହୋଇଗଲୁଣି । ତମେ ତ ପଇସା ଗୋଟେଇବାରେ ଲାଗିଛ । ତମକୁ ବାଧିବ କିଆଁ । —କଥାଗୁଡ଼ାକ କଣ୍ଡକ୍ଟରର ଏ କାନରେ ପଶି ସେ କାନରେ ବାହାରିଯାଏ । ବେଶି ହୋ ହୋ ହେଲେ ସେ ମୁହଁରେ ଅନୁତାପର ଭେଜାଲ ଆଭା ଫୁଟାଇ ନକଲି କ୍ଷମାପ୍ରାର୍ଥନାର ଢଙ୍ଗ ଦେଖାଇ କହିଦିଏ—କଅଣ କରିବୁ ଆଜ୍ଞା, ପେଟ୍ରୋଲ ଦାମ୍ ବଢ଼ିଲା, ମୋବିଲ ଦାମ୍ ବଢ଼ିଲା, ବାଟରେ ତ ଅଠରଠାଆ ପାଣି ଦେବାକୁ ପଡ଼ୁଛି । ଏଣେ ତ ସରକାର ଭଡ଼ା ବଢ଼େଇବାକୁ ଦେଉ ନାହାନ୍ତି । ଖୁନ୍ଦାଖୁନ୍ଦି ଯାତ୍ରୀ ନ ନେଲେ ଆମେ ଚଳିବୁ କେମିତି ? ବାସ୍, ସେଇଠି ବଚନିକା ଶେଷ ହୁଏ । ଯାତ୍ରୀ-ମାନଙ୍କ ଗର୍‌ଗର୍ ଶବ୍ଦ ଯନ୍ତ୍ରର ଘର୍‌ଘର୍ ଶବ୍ଦ ଭିତରେ ଲୁଚିଯାଏ ।

ଶ୍ରୀରାମଚନ୍ଦ୍ର ଭବନରେ ତୈଳଚିତ୍ର ଖୁନ୍ଦାଖୁନ୍ଦିବେଳେ ଏମିତିଆ ପ୍ରତିବାଦ ନିଶ୍ଚୟ ହେଉଥିବ । ହେଲେ ସେଗୁଡ଼ାକ କେହି ଶୁଣି ପାରିବେ ନାହିଁ । ସେମାନଙ୍କ କଣ୍ଠସ୍ୱର ଜେନାକବି ମୁରରମୋହନ ଅବା ଶୁଣି ପାରୁଥିବେ । ଧ୍ୟାନ କରି ମୁନି ଋଷିମାନେ ତିନି କାଳର କଥା କୁଡ଼ିଆ ଭିତରେ ବସି ଜାଣିପାରୁଥିଲେ । ଏ ସାହିତ୍ୟିକ ମୁନି ଋଷିମାନେ ରାତି ଅଧରେ ଶ୍ରୀରାମଚନ୍ଦ୍ର ଭବନ ଭିତରେ ବସି ବେଳେବେଳେ କଥାବାର୍ତ୍ତା ହେଉଥିଲେ । କଥୋପକଥନ ଦିନେ ଏମିତି ଚାଲିଥିଲା :

ରାଧାନାଥ—ହେଇ ଗଙ୍ଗାଧର ! ଏ ଜେନାକବି ଆମ ଘରଟାକୁ ତକିଆ ଆଉ ଆମକୁ ତୁଳା ମନେ କରୁଛି । ପହିଲେ ପହିଲେ ଆମେ କେଡ଼େ ଆରାମରେ ଏଠି ନିଃଶ୍ୱାସ ମାରୁଥିଲୁ । ଫରକତ ଜାଗାରେ ବସି ମନ ଆନନ୍ଦରେ ଗପ ସପ, ଦୁଃଖ ସୁଖ ହେଉଥିଲୁ । ଏବେ ତ ଆମକୁ ନିଃଶ୍ୱାସ ମାରିବା କଷ୍ଟକର ହେଲାଣି ।

ଗଙ୍ଗାଧର—ହଁ ଦେବ ! ବାଛି ବାଛି ମୁଦ୍ଗର ଯାହାଙ୍କୁ ଭେଟିଲା ତାଙ୍କୁ ପାକଲେଇ ସୁକଲେଇ ଏଇଠିକି ନେଇ ଆସିଲା ।

ରାଧାନାଥ—କଥା ଥିଲା ପରା, ଯେଉଁମାନେ ପୃଥିବୀରୁ ବିଦାୟ ନେବେ କେବଳ ସେହିମାନଙ୍କୁ ଏଠାରେ ଥାନ ମିଳିବ ?

ଗଙ୍ଗାଧର—ହଁ, ମୁଦ୍ଗର କାନ୍ଥ ଝୁଙ୍କ ଉଠିଲା ପୃଥିବୀରୁ ବିଦାୟ ନେଇଥାଆନ୍ତୁ ବା ନ ନେଇଥାଆନ୍ତୁ । ଯୋଉ ସାହିତ୍ୟିକ ତା ଆଗରେ ପଡ଼ିବେ ତାଙ୍କୁ ସେ ଆଣି ଏଠି ପଙ୍ଗତରେ ବସେଇଦେବ । ଗୋଟାଏ ଝୁଇରେ ମାଡ ଇଆଡ଼େ ଅଡ଼େଇ ଆଣିଲା । ଆଦେନ ହବୁ ଠିକ୍ ଭାବରେ ପଡ଼ି ନଥିଲା । ଜାଗାକୁଗ ହୋଇଗଲା । କଏରେ କଏରେ ରଡ଼ି ଉଠିଲା ।

ରାଧାନାଥ—ଠେଲମ୍‌ଠେଲା ଲଗିଲା ବୋଲି ଯେ ଆମେ କେବଳ ଦୁଃଖ କରୁଥିଲୁ ତାହା ନୁହେଁ, ଯେଉଁମାନଙ୍କର ସୃଷ୍ଟି ସରନ୍ତି; ଆହୁରି କିଛି ସୃଷ୍ଟି କରିବାକୁ ବାକି ଅଛି, ସେମାନଙ୍କୁ ବି ନେଇ ଆସିଲା । ସେମାନଙ୍କ ସୃଷ୍ଟିକୁ ବନ୍ଦ କରିଦେଲା ଭଲ କଥାଟା ହେଲା ।

ଗଙ୍ଗାଧର—ହଁ ହଁ. କଥାଟା ସେମିତି ହୋଇଥିଲା । ମୁଦ୍ଗର ସେମିତିଆ କେତେକଙ୍କୁ ବାଛି ବାଛି ଆଣି ଆସ୍ଥାନରେ ବସେଇ ଦେଇଥିଲା । ଅଉ କେତେକଙ୍କୁ ଭଣ୍ଡୁଥିଲା । ହେଲେ ତାଙ୍କର ଆଡ଼୍ ହଲ୍ଲା ଉଠିଲା—ଆହେ ତଳ ଆରେ ଡୁଲା ଖୁଦ୍ଦ ଖୁଦ୍ଦ କେଆ ଫଟେଇବ କି ? ଏଠି ଜାଗା ନାହିଁ ଏତେ ଲୋକଙ୍କୁ ପଙ୍ଗତରେ ବସେଇବ । ଏସବୁ ବନ୍ଦ କର । ମୁଦ୍ଗର ସାଙ୍ଗରେ ସେମାନଙ୍କର ବହେ ଝଙ୍କାଝଙ୍କ ଲଗି ଶେଷରେ ସ୍ଥିରହେଲା, ଯେଉଁମାନଙ୍କର କଲମରୁ କାଳି ଶୁଖି ଆସିଲାଣି, ଯମପୁର ବାହ୍‌ରେ ଟିକଟ ଗରଭି କରସାରିଲେଣି, ଯାହାର ପିଲାପିଲି କେହି ନାହାନ୍ତି, ଯାହାଙ୍କର ହମର ପଉର ଟପିଲାଣି, ଯେଉଁମାନେ ଗୁଆ ନଡ଼ିଆକୁ ଦେଖି ଡରୁଛନ୍ତି, ସେହିମାନଙ୍କୁ କେବଳ ଆମ ପଙ୍ଗତରେ ବସାଯିବ ।

ରାଧାନାଥ—ହଁ ହଁ, ତାହା ମୋର ମନେ ଅଛି । ସେମିତିଆ କେତେକଙ୍କୁ ମୁଦ୍ଗର ଆଣି ଆମ ପଙ୍ଗତରେ ବସେଇ ଦେଇଥିଲା । ସେମାନଙ୍କ ଭିତରୁ ଜଣେ ଖଡ ଅଧରେ ଉଠି କୁଆଡ଼େ ପଳେଇଲେ । କଏବା କହିଲା—ନା, ତାଙ୍କୁ କଏ ସ୍ୱେର କର ନେଇଗଲା । ବଡ଼ ଧନୀଲୋକଙ୍କ ପୁଅକୁ ଡକେଇତମାନେ ସ୍ୱେର କର ନେଇଯାଇ ଧନୀ ଲୋକଠାରୁ ଯେମିତି ଟଙ୍କା ଅଦାୟ କରନ୍ତି ଠିକ୍

ଯେମିତି ମୁରାରିଠାରୁ କିଏ ଟଙ୍କା ଆଦାୟ କରିବାକୁ ଏହି କାଣ୍ଡ କରିଥିବ । କି ଅବା ସେ ଏଠି ପଙ୍ଗତରେ ବସିଲେ ଆଉ ନୂଆ କିଛି ସୃଷ୍ଟି କରି ପାରିବେନି କିମ୍ବା ତାଙ୍କ ସୃଷ୍ଟ ଟଙ୍କାର ଓ ବର୍ଷା ମିଳନର କାଳେ କିଛି କ୍ଷତି ଘଟିବ, ଏଥିଲାଗି ସେ ପଳେଇଲେ । ଆଉ କେତେଜଣ ଏଇଠି ବସି ବସି ପାର୍ଥିବ ବନ୍ଧନ ତୁଟେଇଦେଲେ । ଜଣେ ଅଧେ ବି ଏପର୍ଯ୍ୟନ୍ତ ବନ୍ଧନ ତୁଟେଇ ନାହାନ୍ତି, ହେଲେ ଯୁକୁଯୁକୁ ହେଉଛନ୍ତି । ଏବେ ଆଉ ପାର୍ଥିବ ସାହିତ୍ୟିକଙ୍କୁ ଏଠାକୁ ଅଣାଯାଉନାହିଁ ।

ଗଙ୍ଗାଧର—ନ ଆସନ୍ତୁ ପାର୍ଥିବ ସାହିତ୍ୟିକ, ମୁରାରି ଜେନା ଆଉ ପରମାନନ୍ଦ ଅଧିକାରୀ ପରି ଏବେ ଡାକ୍ତରଖାନା, ଗଳିକନ୍ଦି ଉଣ୍ଡି ବୁଲୁଛନ୍ତି, କୋଉଠି କେଉଁ ସାହିତ୍ୟିକ ପୃଥିବୀ ଛାଡୁଛନ୍ତି । ଖବର ପାଇବା ମାତ୍ରେ ଶୁଙ୍ଘି ଶିଙ୍ଘି ନ ସରୁଣୁ ତାଙ୍କ ପୁଅଙ୍କୁ ଜୀବନବୀମା ପ୍ରତିନିଧି ପରି ପାକଲେଇବାରେ ଲାଗିଯାଆନ୍ତି । ସେ ମୃତ ବାପାଙ୍କର ତୈଳଚିତ୍ରଟାଏ ଦେବାକୁ ଅଙ୍ଗୀକାର ନ କରିବା ଯାଏ ତାଙ୍କଠାରେ ଜୋକପରି ଲାଗିଯାଆନ୍ତି ।

ରାଧାନାଥ—କେବଳ କଅଣ ଏତିକି, ସେ ଦି'ଜଣ ସକାଳୁ ଉଠି ନିଜ ନିଜ ଇଷ୍ଟଦେବଙ୍କୁ ପ୍ରାର୍ଥନା କରନ୍ତି—ପ୍ରଭୋ ! ଆଜି ଯେମିତି ହେଲେ ଦି'ଚାରିଜଣ ସାହିତ୍ୟିକଙ୍କୁ ପୃଥିବୀରୁ ବିଦାୟ ଦିଅ । ସେମାନଙ୍କ ତୈଳଚିତ୍ର ଯେମିତି ମୋ ହାତରେ ପଡ଼ିବ । ମୁଁ ଯେମିତି ସେମାନଙ୍କୁ ନେଇ ପଙ୍ଗତରେ ବସେଇବି । ଅନ୍ୟ ହାତୁଡ଼ରେ ଜଣେ ବି ନ ପଡ଼ୁ । ସେ ଦୁହିଁଙ୍କର ଗୋଟିଏ ପ୍ରତିଯୋଗିତା ଲାଗିଛି । କିଏ ବେଶି ଶତାବ୍ଦୀ ସାହିତ୍ୟିକଙ୍କୁ ଆଣି ଏ ପଙ୍ଗତରେ ବସେଇବ । ଏମିତିଆ କବିମାନେ ତ ଆସି ଭିଡ଼ ଜମେଇଲେଣି । ଜୀଅନ୍ତା ସାହିତ୍ୟିକ କଥା ପଚାରେ କିଏ ?

ଗଙ୍ଗାଧର—ଜାଗାଜୁଟ୍ ହେବ ଭାବି ଦୁହେଁ ଆମ ଆସନକୁ ଜାକିଜୁକି ଦେଇଥିଲେ । ତେବେ ବି କନ୍ଧ ବକନ୍ଧ ସବୁ ପୂର୍ଣ୍ଣ ହୋଇଗଲାଣି । ବହୁତ କବି ଗୋଦାମ ଘରେ ଅପେକ୍ଷା କରି ଶୋଇଛନ୍ତି । ଭୋଜିରେ ଯେମିତି ଗୋଟିଏ ଦଳ ଖାଉଥାଆନ୍ତି ଏବଂ ଆଉ ଗୋଟିଏ ଦଳ ବାହାରେ ଅପେକ୍ଷାକରି ବକର ବକର ହେଉଥାଆନ୍ତି, ଏଠା ଅବସ୍ଥା ଠିକ୍ ସେମିତି ହୋଇଯାଇଛି । ବହୁ କବି ଏଠା ଗୋଦାମ ଘରେ ଶୋଇ ରହି ମରିବରେ ମରିବରେ ବଳବଳୋଉଛନ୍ତି । ଆମେ ଏଠି ଜାକିଜୁକି ହୋଇ ହେଲେ ବସିଛୁ । କିନ୍ତୁ ଗୋଦାମ ଘରେ ତ ଜାଗା ଖେଞ୍ଚ । ସେଠି ଟ୍ରେଡ଼ର ଟାୱାର

ଭଳି ତା ଉପରକୁ ତା ଉପରକୁ ଶୋଇରହି ହାମ୍ପୋଉଛନ୍ତି । ଏଥିପ୍ରତି ମୁରାରି, ପରମାନନ୍ଦ ଟିକିଏ ଧ୍ୟାନ ଦେଇପାର ନାହାନ୍ତି ।

ଘୋଡାକୁ ସେଦିନ ମୁରାରି, ପରମାନନ୍ଦ ଗୋଟାଏ ଦରକାମ ଦାବୁ ଯାଉ ସାଢ଼େ ବାରଟା ବାଜିଗଲା । ଦୁ'ଜଣଯାକ କ୍ଲାନ୍ତ ହୋଇପଡ଼ିଥିବାରୁ ସେଇଠି ଗଡ଼ିଗଲେ । ଘୋର ନିଦ ଦୁ'ଜଣଙ୍କୁ ଘାରି ପକେଇଲା । ସେଇ ଅବସ୍ଥାରେ ଦୁହେଁ ଦେହସବୁ କଥା ଶୁଣିଲେ । ଦୁହେଁ ଦେଖିଲେ ରାଧାନାଥ ଓ ଗଙ୍ଗାଧର ସେମାନଙ୍କ ପାଖକୁ ଆସି କହିଲେ- ହଇରେ ନାତିଏ, ତୁମେ କଅଣ ଦେଖିପାରୁନ ଆମେ ଏଠି କେମିତି ଗୁନ୍ଦାଗୁନ୍ଦି ହୋଇ ବସିଛୁ । ଏମିତି ଯାନ୍ତି ହୋଇଗଲୁଣି ଯେ ନିଃଶ୍ୱାସ ନେବାକୁ କଷ୍ଟ ହେଉଛି । ଆମେ ତ ଯାହାହେଲେ କଷ୍ଟେମଷ୍ଟେ ଚଳିଯାଉଛୁ; କିନ୍ତୁ ଆମ ପୁଅ, ସ୍ୱରୁରମାନେ କଡ଼ ଗୋଦାମ ଘରେ କୋଡ଼ିଏ ପଚିଶ ଟାଙ୍ଗିରରେ ତା ଉପରକୁ ଉପରକୁ ବନ୍ଦହୋଇ ପଡ଼ିରହିଛନ୍ତି । ସେମାନଙ୍କ କଥା କେହିହେଲେ ତ ଖବର ନାହିଁ । ଆମେ ସମସ୍ତେ ଯଦି ଏମିତି କଷ୍ଟ ପାଇବୁ ତୁମ୍ଭମାନଙ୍କର କେବେ ମଙ୍ଗଳ ହେବନି । ଶୀଘ୍ର ସରକାରଙ୍କୁ କହି ଆମ୍ଭମାନଙ୍କ ପାଇଁ ଆଉ ଗୋଟାଏ ବଡ଼ଘର ଯୋଗାଡ଼ କରିଦିଅ । ଆମେ ତୁମ ଦୁହିଁଙ୍କୁ ପେଟପୁରା ଆଶୀର୍ବାଦ କରିବୁ । ତୁମେ ଦୁହେଁ ସାହିତ୍ୟ ଏକାଡ଼େମୀର ସମ୍ପାଦକ ଓ ଯୁଗ୍ମ ସମ୍ପାଦକ ବନିଯିବ । ଶୀଘ୍ର କାମରେ ଲାଗିଯାଅ—

—ଆଜ୍ଞା ହଉ, ଆମେ ଦୁହେଁ ଏହି ମୁହୂର୍ତ୍ତରେ ଯାଉଛୁ ଭୁବନେଶ୍ୱର । ସରକାରଙ୍କଠାରୁ ଗୋଟାଏ ବଡ଼ ଘର ମୁଖ୍ୟମନ୍ତ୍ରୀଙ୍କ ହାତରୁ ନ ଆଣି ଫେରିବୁ ନାହିଁ । ଘର ଆଣିବୁ ନଚେତ୍ ମରିବୁ । କାର୍ଯ୍ୟଂ ସାଧୟେତ୍ ବା ଶରୀରଂ ପାତୟେତ୍ । ଯାଉଛୁ ଆମେ ଦୁହେଁ—ଟା-ଟା—

ଗଙ୍ଗାଧର ପଚାରିଲେ—ହଇହେ ସେ ଦୁହେଁ କଅଣ ଟାଟା କହିଲେ । ଜଣେ ଟାଟା, ଆଉ ଜଣେ ବିରଳା କହିଥିଲେ ଭଲ ହୋଇ ନ ଥାନ୍ତା । ରାଧାନାଥ କହିଲେ ସେ ଦୁହେଁ ବଡ଼ ବ୍ୟବସାୟୀ ବୋଲି ଦୁ'ଜଣଙ୍କ ଭିତରେ କଳିଲାଗିଛି । ଏମାନେ ଟାଟାର ଲୋକ । ସେଥିଲାଗି ବିରଳାର ନାମ ଧରୁନାହାନ୍ତି । ଛାଡ଼ନ୍ତୁ ସେକଥା— ଏଣେ ମୁରାରି, ପରମାନନ୍ଦ ଗୋଟାଏ କାର୍ ଭଡ଼ାକରି ମୁହୂର୍ତ୍ତକ ମଧ୍ୟରେ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରଦେଶରେ ପହଞ୍ଚିଗଲେ ଆଉ କବାଟ ଧଡ଼ ଧଡ଼ କରି ରଡ଼ି ଛାଡ଼ିଲେ—ହୋ ଜନକବାବୁ, ଜନକବାବୁ, ଆହେ ଜନକବାବୁ । ଅଜ୍ଞା ଶୁଣିବା ହୁଅନ୍ତୁ—ଉ, ସେଣ୍ଟ୍ରେ ଦୁ'ଜଣ ବସି ଢୁଳଉଥିଲେ । ଦୁ'ଜଣଙ୍କ ପାଟିରେ ଚମକି ପଡ଼ି ପାଟିକଲେ—ଆରେ ଚଳିଓ ମତ୍ । ପରମାନନ୍ଦ କହିଲେ—ଅଜ୍ଞା ! ଆପଣ ଯେତେବେଳେ ପାଟି ନ କରିବାକୁ ଆଜ୍ଞା ଦେଲେଣି, ଆମେ ଆଜ୍ଞା ମାନିବାକୁ ବାଧ୍ୟ ।

ହେଲେ ଆଜ୍ଞା ଆପଣ ଦୁ'ଜଣଙ୍କର ଦନ୍ତ ଦୁଇଟା ଭାରି ମାତବରିଆ ଦିଶୁଛି । ଆପଣଙ୍କ ଦନ୍ତ ଦୁଇଟା ଦେଖିଲେ ସବୁଠୁ ସୁନ୍ଦରୀ ଫିଲ୍ମଷ୍ଟାର ଆପଣଙ୍କ ପଛେ ପଛେ ଗୋଡ଼େଇବେ ।

ସତେ ବଢ଼ିଆ ହୋଇଛି !

—ଆଜ୍ଞା ପଚାରୁଛନ୍ତି ? ମୁଁ ଯଦି ଝିଅ ହୋଇଥାଆନ୍ତି ମୁଁ ପଛ ଗୋଡ଼େଇ ଥାଆନ୍ତି, ହଇରେ ମୁରାରି ବଢ଼ିଆ ଦନ୍ତ ହୋଇନ ?

—ହଁ, ଏମିତିଆ ଦନ୍ତ କେବଳ ହେମାମାଳିନୀ ନା-ନା ହେମନ୍ତ ବାବୁ, ପଞ୍ଜାବ ଲାଟ୍‌ସାହେବଙ୍କର ଥିଲା । ଆଉ କାହାର ମୁଁ ଏତେ ସୁନ୍ଦର ଦନ୍ତ ଦେଖିନି । ବାସ୍ତବିକ ଲୋଭନୀୟ ହୋଇଛି ।

ସେଣ୍ଟ୍ରି ଦୁ'ଜଣ ନିଜ ନିଜ ଦନ୍ତକୁ ଘନ ଘନ ସାଉଁଳେଇବାରେ ଲାଗିଲେ । ଜଣେ କହିଲା—ଏଇଠି ଥାଅ, ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଖବର ଦେଉଛି ।

ଦୁ'ଜଣଙ୍କ ପରିଚୟ ସଙ୍କେତ ନେଇ ଜଣେ ସେଣ୍ଟ୍ରି ଚାଲିଗଲା ଏବଂ ସଙ୍ଗେ ସଙ୍ଗେ ଫେରି ଆସି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଦୁଇଜଣଙ୍କୁ ନେଇଗଲା । ମୁଖ୍ୟମନ୍ତ୍ରୀଙ୍କୁ ନବେ ଡିଗ୍ରୀର ନମସ୍କାର ପକାଇ ଦୁହେଁ ଏକାବେଳକେ କହିଉଠିଲେ । ଆଗରୁ ସବୁ କହି ପକାଇବାକୁ ଚେଷ୍ଟା କଲାରୁ କଥାଗୁଡ଼ାକ ଆବୁରୀଖାବୁରା ହୋଇଗଲା । ମୁଖ୍ୟମନ୍ତ୍ରୀ କେବଳ ଶବ୍ଦଗୁଡ଼ାକ ଶୁଣି ପାରିଲେ—ଶ୍ରୀରାମଚନ୍ଦ୍ର ଭବନ, ଜାଗା ଶେଷ, ସାହିତ୍ୟିକ, ଶହୀଦଭବନ, ଅସୁବିଧା, ତୈଳଚିତ୍ର ଇତ୍ୟାଦି । ହେଲେ ଅର୍ଥ ବୁଝିନପାରି କେବଳ ମୁରାରିଙ୍କୁ କହିବାକୁ ନିର୍ଦ୍ଦେଶ ଦେଲେ । ପରମାନନ୍ଦ ଅଧା ବେହୋସ ହୋଇ ମୁଣ୍ଡରେ ହାତ ଦେଲା । ମୁରାରିର ପଚିଶମିନିଟିଆ ବକ୍ତୃତାରୁ ଏତିକି ସାରକଥା ସଂଗ୍ରହ କଲେ ଯେ ଶ୍ରୀରାମଚନ୍ଦ୍ର ଭବନରେ ଗଣ୍ୟମାନ୍ୟ ସାହିତ୍ୟିକମାନଙ୍କ ତୈଳଚିତ୍ର ରଖାଯିବା ଲାଗି ଆଉ ସ୍ଥାନ ନାହିଁ । ଏବେ ଗୋଦାମ ଘରେ ଅଧିକା ତୈଳଚିତ୍ରଗୁଡ଼ିକୁ ଗଦାକରି ରଖାଯାଇଛି । ଏବେ ସାହିତ୍ୟିକମାନେ ପୁଷ୍ଟି ଅଭାବରୁ ଯେଉଁ ରେଟ୍‌ରେ ମରିବାକୁ ଆରମ୍ଭ କଲେଣି ସେଥିରେ ହଲ୍‌ଟି ବି ପୂରିଯିବ । ସଭା କରିବାକୁ ସ୍ଥାନ ମିଳିବନି । ଏଣୁ ଶହୀଦଭବନଟାକୁ ଉତ୍କଳ ସାହିତ୍ୟ ସମାଜକୁ ହସ୍ତାନ୍ତରିତ କରାଯାଉ । ପରମାନନ୍ଦଙ୍କ କଥାରୁ ସାର ସଂଗ୍ରହ କଲେ ଯେ ସେ ଜଣେ ସର୍ବଗୁଣସମ୍ପନ୍ନ ମୁଖ୍ୟମନ୍ତ୍ରୀ । ଏପରି ମୁଖ୍ୟମନ୍ତ୍ରୀ ପାଇଁ ଓଡ଼ିଶା ଗର୍ବିତ । ସେ ଜଣେ ଉଚ୍ଚକୋଟିର (ସାହିତ୍ୟିକ, ସାମ୍ବାଦିକ, ସମ୍ପାଦକ, ରାଜନୀତିକ, ଦାର୍ଶନିକ, ଗଣତନ୍ତ୍ରବାଦୀ, ରାଜନୀତିଜ୍ଞ, ଶିଳ୍ପବିତ୍, ବିବେକବାନ, ମିଷ୍ଟାଳାପୀ, ଭଦ୍ର, ନମ୍ର, ସ୍ନେହବତ୍ସଳ, ଦୟାର୍ଦ୍ର ହୃଦୟ,

ଦାନବୀର ଶ୍ରୀରାମଚନ୍ଦ୍ର ଭବନ ଓ ଶମ୍ବାଦ ଭବନପ୍ରେମୀ ଇତ୍ୟାଦି ପ୍ରେମୀ) ଅଟନ୍ତି । ଏଣୁ ଆଜ ଏହିକ୍ଷଣି ଶମ୍ବାଦ ଭବନଟାକୁ ସେମାନଙ୍କ ହାତରେ ସମର୍ପଣ କରନ୍ତୁ ଏବଂ ସବୁ ଲେଖକ ଓ କବିଙ୍କର ଆଶୀର୍ବାଦ ଲଭ କରନ୍ତୁ । ଅକ୍ଷୟ କୀର୍ତ୍ତି ଅର୍ଜନ କରନ୍ତୁ ଚିରସ୍ମରଣୀୟ ହୋଇ ରହନ୍ତୁ, ଭଲକାମଟାଏ ସଙ୍ଗେ ସଙ୍ଗେ ଏହି ମୁହୂର୍ତ୍ତିରେ କରନ୍ତୁ ।

ଫାଇଲ୍‌ଟି ଏଠବ ପାଇଖାନା ଦୁଆର ମୁହଁରୁ ଫେରି ଆସିଲେ । ପ୍ରଚଣ୍ଡ ତାଡ଼ନା ପାଇ ପେଣ୍ଟ ସାର୍ଟ ଓଲଟା ପିନ୍ଧି ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚିଗଲେ । ମୁଖ୍ୟମନ୍ତ୍ରୀ ସେଇଠି ସଙ୍ଗେ ସଙ୍ଗେ ଦେହ ମୁହୂର୍ତ୍ତିରେ ଶମ୍ବାଦ ଭବନଟାକୁ ଉତ୍କଳ ସାହିତ୍ୟ ସମାଜକୁ ହସ୍ତାନ୍ତର କରି ଆବଶ୍ୟକୀୟ କାଗଜପତ୍ର କରିଦେବାକୁ ଆଦେଶ ଦେଲେ । ତୁହେଁ ଆଦେଶନାମା ନେଇ ଶମ୍ବାଦ ଭବନରେ ପହଞ୍ଚିଲେ । ଗେଟ୍ ଆଉଟ୍, ଗେଟ୍ ଆଉଟ୍, ନକଲ ଯାଓ, ପାଦାଣ୍ଡି ପାଦାଣ୍ଡି ଆଦି ସିଂହରଡ଼ି ଦେଲେ । ସେଠାରୁ ଲୋକେ ପେଡ଼ିପୁଟୁଳା ଧରି ପଳାଇଲେ । ମିସ୍ତ୍ରୀ ବଢ଼େଇ ଆସିଲେ । ଶ୍ରୀରାମଚନ୍ଦ୍ର ଭବନରୁ ସବୁ ତୈଳଚିତ୍ର ଅଣାଯାଇ କଣ୍ଟାଗଲା । ଯଥେଷ୍ଟ ସ୍ଥାନ ବଳିପଡ଼ିଲା । କେଉଁଠି ଥିଲେ ସ୍ୱାଧୀନଯୁଗିଆ, ଆଦିଯୁଗିଆ ଛତ୍ତିଦାରମାନେ ଲୁଇପା, ଶବରୀପା, ବତ୍ସା ଦାସ, ସାରଳା ଦାସ, ଜଗନ୍ନାଥ, ଅନନ୍ତ, ଅଚ୍ୟୁତ, ବଳରାମ, ଯଶୋବନ୍ତ, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ, ଦୀନକୃଷ୍ଣ ଆଦିଙ୍କର ତୈଳଚିତ୍ର ସବୁ ମୁଣ୍ଡେଇ ଆସି ପହଞ୍ଚିଗଲେ । ଆଧୁନିକିଆମାନେ କହିଲେ ସେଗୁଡ଼ାକ ମନଗଢ଼ା ତୈଳଚିତ୍ର । ତେଣୁ ସେଠି ରହି ପାରିବ ନାହିଁ । ଫଟୋରୁ ତିଆରି ହୋଇଥିଲେ ରଖାଯାଇଥାନ୍ତା । ପୁରାତନିଆମାନେ କହ୍ନେଇବସିଲା । କି କଥା ! ସେତେବେଳେ ଫଟୋଗ୍ରାଫ ନଥିଲା, ଶିଳ୍ପୀମାନେ ଲୋକ ଦେଖି ଚିତ୍ର ଆଙ୍କୁଥିଲେ ।

—ଏଗୁଡ଼ାକ ତାଙ୍କ ସମୟର ଚିତ୍ର ନୁହେଁ । ତାଙ୍କୁ ନ ଦେଖି ଅନ୍ଦାଜିଆ ତିଆରି ହୋଇଛି । ତେଣୁ ଏଠି ରଖାଯାଇ ପାରିବନି । ମୋଟଉପରେ ସେମାନେ ପ୍ରକୃତ ଲୋକ ବୋଲି କେହି ବିଶ୍ୱାସ କରିବେନି, ଚିହ୍ନି ବି ପାରିବେନି ।

—ଶ୍ରୀକୃଷ୍ଣ, ଅର୍ଜୁନ, ଭୀମ, ରାମ, ରାବଣ, ହନୁମନ୍ତଙ୍କୁ ବସେଇ କିଏ ତୈଳଚିତ୍ର ଆଙ୍କିଥିଲା । ଏବେ ଯେ ଲୋକ ସେ ଚିତ୍ର ଦେଖିବା ମାତ୍ରେ ଚିହ୍ନି ଯାଉଛନ୍ତି । ସେମିତି ଏମାନଙ୍କୁ ଚିହ୍ନିବେ ।

—କି ଅଦ୍ଭୁତ କଥା ! ଦେବତାମାନଙ୍କର ରୂପ ବର୍ଣ୍ଣନା ପଢ଼ି ଶିଳ୍ପୀମାନେ ସେସବୁ ଚିତ୍ର କରିଥିଲେ । କାଳକ୍ରମେ ଦେବତା ବୋଲି ସିଏ ଚଳିଯାଇଛି । ଏମାନଙ୍କ ରୂପ ବର୍ଣ୍ଣନା କେଉଁଠି ଅଛି କାଢ଼, ଆଉ ତା ସଙ୍ଗେ ଏ ତୈଳଚିତ୍ରକୁ ମିଳାଅ ।

—ହଁ ହଁ, ଖୁବ୍ ଅଳ୍ପ ହେଲେ ବି କାମ ଦାମରୁ ସେମାନଙ୍କ ଚେହେରା ଠହରାଇ ନିଆଯାଇ ଚିତ୍ର ଅଙ୍କା ହୋଇଛି ।

—କାହିଁ ଦେଖାଅ

—ପରେ ଦେଖାଇବୁ

—ପରେ ରଖାଯିବ

କଥା ବଢ଼ି ବଢ଼ି ହାତାହାତିଯାଏ ଗଲା । ଶପୃନରତ ମୁରାରି ଓ ପରମାନନ୍ଦ ଦୁହେଁ ଗାଳି ଦିଆଦେଇ ହୋଇ ମୁହଁ ମରାମରି ହେଲେ । ସେଇରଟାରୁ ଏମିତି ପାଟି ଶୁଭିବାରୁ କେମ୍ବାରଷ୍ଟେକର ଧଡ଼ ବୁଢ଼ା ଆସି ତା ପୁଅ ଦୁହେଁ ଘର ଭିତରେ ପଶି ଦି'ଜଣଙ୍କୁ ଛଡ଼ାଛଡ଼ି କଲେ ଏବଂ ମୁହଁରେ ପାଣିଛିଟମାରି ଚେତା ଫେରାଇ ଆଣିଲେ । ଦୁହେଁ ଲଜ୍ଜିତ ହୋଇ ନିଜ ନିଜ ଘରକୁ ପଳାଇଲେ ।

—*—

# କାମକବି

ହରି୍ ମଲିକେ ସବୁ ବେଉସାରେ ଚିତ୍‌ପଟାଙ୍ଗ ମାରିସାରିବା ପରେ ମନେ ମନେ ସ୍ଥିର କଲେ ଯେ ସେ ଜଣେ କାମକବି ବନିବେ । ଧେନୁ ଯେମିତି ଯେକୌଣସି ସମୟରେ ନିଜ ଇଚ୍ଛାମତେ ଅସରନ୍ତି ଦୁଧ ଦେଇ କାମଧେନୁ ପାଲଟିଯାଏ, ସେ ସେହିପରି ଅସରନ୍ତି କବିତା ନିଜ ପନ୍ହାରୁ ଝରେଇ ଓ କବିତାପ୍ରେମୀମାନଙ୍କ କାବ୍ୟତୃଷ୍ଣା ମେଣ୍ଟେଇ କାମକବି ଅଲବତ୍ ବନିଯିବେ । ସେମାନଙ୍କୁ କବିତା ପିଆଇ ପିଆଇ ଗର୍କିଆ କରିଦେବେ । ଅନ୍ୟ ସବୁ ବେଉସାରେ ସିନା ଶୁଭଦିନ ଦେଖି ଆରମ୍ଭ କରି ନ ଥିବା ଦୋଷରୁ ମାଙ୍କଡ଼ଚିତ୍ ମାରିଲେ, ଏଇଟାକୁ କିନ୍ତୁ ସେ ଅସଲି କୋହିନୁର ପଞ୍ଜିକା ଅନୁମୋଦିତ ଚବିଶ କ୍ୟାରେଟ ଶୁଭ ଦିନରେ ସୁରୁ କରିଦେବେ । କବିତା ତ କବିତା, କବିତାର ବଡ଼ବୋପା ବି ସାଧି ହୋଇଯିବ, କଲମ ମୁନରୁ କାଳିର ଗଳିଆ ଫିଟି କବିତାର ପ୍ରବଳ ସୁଅ ଚାରିଆଡ଼କୁ ମାଡ଼ିଯିବ । ଶୁଖା ଖଡ଼୍ ଖଡ଼୍ ଭୂଇଁ ନୂଆପାଣି ପିଇଗଲା ପରି କବିତାପିପାସୁମାନେ କବିତା ସୁଅରେ ମୁହଁ ଲଗାଇ ସଅଁ ସଅଁ କରି ପିଇଯିବେ, ମନଇଚ୍ଛା ପିଇଯିବେ । ଟିକିଏ ହେଲେ ଶୋଷ କାହାର ରହିବ ନାହିଁ । ସେ ହେବେ କାମକବି ।

ପଞ୍ଜିକା ପୋଖରି ଘାଣ୍ଟ ଘାଣ୍ଟି ହରି୍ ମଲିକେ ଶୁଭଦିନ କୋଟିଆଣ୍ଟା ପକେଇଲେ । ଶନିବାର ଦିବା ଦଶଦଣ୍ଡ ନଅ ଲିତାଗତେ ଶୁଭ ମାହେନ୍ଦ୍ର ବେଳାର ଉଦୟ । ଭୋରରୁ ମଲିକେ ସ୍ନାନାଦି ନିତ୍ୟକର୍ମ ଶେଷକରି ଇଷ୍ଟଦେବ ସ୍ମରଣପୂର୍ବକ କାଗଜ ପକେଇ ତା ଉପରେ କଲମକୁ ଠିଆରି କରି ରଖିଲେ । କଲମର ପ୍ରଚଣ୍ଡ ଶକ୍ତି ବିଷୟରେ ସେ ଆଗରୁ ବହୁ କବିତା ଓ ପ୍ରବନ୍ଧରୁ କିଛି କିଛି ପଢ଼ିଥିଲେ । ତାଙ୍କୁ ଜଣାଗଲା ସତେ ଯେମିତି ସେ ଏକ ମହାଭୟଙ୍କର ଅସ୍ତ୍ର କାଗଜ ଉପରେ ପ୍ରସ୍ତୁତ କରି ରଖିଛନ୍ତି । କାଗଜ ଉପରେ ଚଳେଇ ଦେବାମାତ୍ରେ ଫ୍ରାନ୍‌ସ ପାଞ୍ଚଗଡ଼ା ମାରିବ, ରୁଷିଆ ବି ଛନଗଡ଼ା ମାରିବ, କଅଣ ଲେଖିବେ ସେ ବିଷୟରେ ଚିନ୍ତା କରିବା ଏକ କମ୍‌ଜୋରିର ଲକ୍ଷଣ । କଲମମୁନ କାଗଜରେ ଲାଗିବା ମାତ୍ରେ ତାହା ଯଦି ସ୍ୱୟଂକ୍ରିୟ ଭାବରେ ନ ଚାଲିଲା ତେବେ କଲମରୂପୀ ଅସ୍ତ୍ରର ନିନ୍ଦା, ଅସ୍ତ୍ରଧାରୀର ଅପଯଶ ଆଉ କାଗଜ ବି ଏକ ଅନୁର୍ବର କ୍ଷେତ୍ର ବୋଲି ପ୍ରମାଣିତ ହେବ । ବହିସବୁ ସମୀକ୍ଷା କଲାବେଳେ ସମୀକ୍ଷକମାନେ ଅଧିକାଂଶ ସ୍ଥାନରେ ଲେଖିଥାଆନ୍ତି ଭାଷା ଓ ଭାବର ସାବଲୀଳ ଗତି ହୋଇଛି—ଏହି 'ସାବଲୀଳ' ଗତିକୁ ଲେଖାରେ ଅଲବତ ଫୁଟାଇବାକୁ ପଡ଼ିବ । ଜଣେ ମହୁଆ ପରି ଭାବନାର ଦୁଆରଟାକୁ ପଟ୍‌କରି ମେଲାକରି ଦେବାକୁ

ହେବ । ତେଣିକି ସେ ଭାବନାଗୁଡ଼ାକ ବେକଣ୍ଟ୍ରୋଲ ବା ବେଅକ୍ତିଆର ହୋଇ ଯୁଆଡ଼େ ଗଡ଼ିଯାଉଛି ଯାଉ—ଏହାହିଁ ଯଥାର୍ଥରେ ଭାବର ସାବଲୀଳ ଗତି । ସେହିପରି ଭାଷାର ସାବଲୀଳ ଗତି ମଧ୍ୟ ଦେଖିବାକୁ ହେବ, ଶିଶୁ ପ୍ରଥମେ ଗୁଲୁର୍ ଗୁଲୁର କରି ଯେଉଁସବୁ ଅବୋଧ ଓ ଦୁର୍ବୋଧ ଶବ୍ଦ ଉଚ୍ଚାରଣ କରେ ତାକୁ ସମସ୍ତେ ଶୁଣି ଆନନ୍ଦ ପାଆନ୍ତି । ଶିଶୁକୁ ଆହୁରି ଗେଲ କରନ୍ତି, ଆହୁରି ଅଧିକ ଅବୋଧ ଶବ୍ଦ କହିବାକୁ । ସେଇଟା ହେଲା ସାବଲୀଳ ଭାଷା । ଆମେ ସେହିପରି ଅବୋଧ ଭାଷା ସବୁ କବିତାରେ ପରଷିଦେଲେ ପାଠକମାନେ ଖୁଲୁରି ପଢ଼ିବେ, ବାହାବା ଦେବେ, ଅଧିକ ଉତ୍ସାହ ଅଜାଡ଼ି ପକାଇବେ । ଦୁର୍ବୋଧତା ପରିବେଷଣ କରିବାଟା କଷ୍ଟକର କଥା ନୁହେଁ । ଅସମ୍ଭବ କଥାଟାଏ କହିଦେବା ମାତ୍ରେ ଦୁର୍ବୋଧତା ସୃଷ୍ଟି ହୋଇଯିବ । ମନେକର, ଆମେ ଲେଖିଦେବା ବାଘ ଘାସ ଖାଇଲା । ଅପସନ୍ଧିଆ କଥାଟାଏ । ସମସ୍ତେ ଧନ୍ଦି ହେବେ, ଥଳକୂଳ ପାଇବେ ନାହିଁ । ସମସ୍ତେ କିନ୍ତୁ ବୁଝିପାରୁ ନାହାନ୍ତି ବୋଲି ଜଣାଇବେ ନାହିଁ । ଆଜିକାଲିର ଦୁନିଆରେ ସମସ୍ତେ ପଣ୍ଡିତ ବ୍ୟାଜ ପିନ୍ଧିଥିବା ବେଳେ ଅଳ୍ପବୁଦ୍ଧିର ପରିଚୟ ଦେବ କିଏ ? ଅଧିକାଂଶ ପାଠକ କଥାଟାର ମର୍ମ ପାଇଥିବାର ବାହାନା କରିବେ । ଜଣେ ଅଧେ ଜିଜ୍ଞାସୁ ପାଠକ ଗର୍ ଗର୍ ହୋଇ ପଚାରି ପାରନ୍ତି—ହଇହୋ ମଦୁଆ ଲେଖକ ! ତମେ ଘାସ ଖାଉଥିବା ଗଞ୍ଜୋଡ଼ ବାଘଟାକୁ କୋଉଠୁ ପାଇଲ ।

ସଙ୍ଗେ ସଙ୍ଗେ ତଟକା ଉତ୍ତରଟା ତାଙ୍କ ଆଡ଼କୁ ଫିଙ୍ଗି ଦେଇ କହିହେବ ବୁଝିବାକୁ ଚେଷ୍ଟାକର । ଏସବୁ ଜିନିଷ ହେଲା ପ୍ରତୀକଧର୍ମୀ ଜିନିଷ । ପ୍ରତୀକବାଦର ଘନ ଜଙ୍ଗଲ ଭିତରେ ବାଟ ଖୋଜିବା ତୁମ ପକ୍ଷରେ କଷ୍ଟକର ହେବ । ମୁଁ ତୁମକୁ ବାଟ ଦେଖାଇ ଦଉଛି, ଦେଖ—ବାଘ କୌଣସି ମାଂସଖାଦକ ଜୀବ ଖାଏ ନାହିଁ । ସେ ଖାଏ ଛେଳି, ମେଣ୍ଢା, ଗାଈ, ହରିଣ, ମଇଁଷି, କୁକୁଡ଼ା ଆଦି ଘାସଖିଆ ଜୀବ । ଏଠି ଘାସ ହେଲା ଭୀରୁଭୋଳା ଜୀବମାନଙ୍କର ପ୍ରତୀକ । ଏଣୁ ଆମେ ବାଘ, ଗାଈ, ମଇଁଷି, କୁକୁଡ଼ା ଆଦି ଖାଇଲା ବୋଲି ନ କହି ସେମାନଙ୍କ ପ୍ରତୀକ ଘାସ ବୋଲି ଲେଖିଲୁ, ଏଥର ବୁଝିପାରିଲେ ତ ? ପାଠକ ଜଣକ ହିଂସ୍ର ମନୋଭାବ ପରିହାର କରି ନିଜର ସ୍ୱଳ୍ପବୁଦ୍ଧି ସମ୍ପର୍କରେ ଅବହିତ ହୋଇ, ମସ୍ତକ ପଶ୍ଚାଦ୍‌ଦେଶ କଣ୍ଡୁୟନ କରି ଭୀରୁଭୋଳା ଜୀବପରି ସେ ସ୍ଥାନରୁ ପଳାୟନ କରିବେ । ଏହି ପ୍ରତୀକବାଦର ସୁବିଧା ନେଇ ସେ ସାପକୁ ବେଙ୍ଗ, ପିମ୍ପୁଡ଼ିକୁ ହାତୀ, ପୋଖରୀକୁ ଆଟ୍ଲାଣ୍ଟିକ, ହିମାଳୟକୁ ମୂଷା କରି ଦେଇ-ପାରିବେ । ଯେତେ ବଡ଼ କ୍ରୋଧୀ ଓ ହିଂସ୍ର ସମାଲୋଚକ ଆସୁ ପଛକେ ତାକୁ ପ୍ରତୀକ ଶବ୍ଦ ଶୁଙ୍ଘାଇ ଦେଇ ସେ କାବୁ କରିଦେବେ । ଭୂତ ଭୟରେ ଛେଲୁଆ ଲୋକେ ଗୁଗ୍ଗୁଳ ପଲେଇଲା ପରି ସେମାନେ ବିବ୍ରତ ଓ ମୁକ୍ତକଚ୍ଛ ହୋଇ ସେ ସ୍ଥାନ ଛାଡ଼ି ପଳେଇବେ ।

ହଠାତ୍ କାମକଟ୍ଟଙ୍କ ଚେତା ପଶିଲା—ଆରେ, କବିତା ବିଷୟରେ ନ ଭାବି ମନରେ ଏଣ୍ଟୁଡ଼େଣ୍ଟୁ କଥଗୁଡ଼ାଏ ଘୁରାଉଛୁ, ଡିଙ୍କିଶାଳରୁ ଯାଇଁ ଢେଙ୍କାନାଳରେ ଛଟିଲିଣି । ନାଃ, ଏଥର କବିତାର ସୋଅ ଖୋଲିବାରେ ଲାଗିଯିବ । ଚିନ୍ତା ଦରକାର ନାହିଁ । ଯାହା ଦେଖିବ ସେଇଆ ଲେଖିବ । ହେ ପ୍ରଗତିକବାଦ୍ଧଳା କବିତାର ଜନ୍ମଦାତା, ତୁମକୁ ସହସ୍ର କୋଟି ପ୍ରଣାମ । ତୁମଲାଗି ସିନା ମୁଁ ଆଜି କାମଚୋ ହେବାକୁ ଅଣ୍ଟାଭିଡ଼ି ବାହାରିଛୁ, ମେସିନରୁ ବଟିକା ସବୁ ଗୁଲ୍‌ଗାଲ୍ ହୋଇ ବାହାରି ପଡ଼ିଲା ପରି ଏବେ କବିମାନେ ଅସୁମାରି ସଂଖ୍ୟାରେ ବାହାରି ପଡ଼ୁଛନ୍ତି । ଏବେ ଆଖି ଆଗରେ ଯାହା ପଡ଼ିଲା ତାହା ହିଁ ଲେଖିଯିବ । କାଗଜ ଉପରେ କଲମ ଘୁର୍‌ ଘୁର୍‌ ଘୁରିଲା :

ଏବଂ ବଗ୍‌ଡ଼ି ମାରେ ହାଇ ଲଙ୍ଗ୍‌ଡ଼ୁ ତା'ର ହଲୁଛି ହଲୁଛି
ଟେବୁଲଟା ଘୁରକାଉ ମେଲାଇ ଘୋର ନାଦରେ ହସୁଛି
ମାଛିମାନେ ଗାଉଛନ୍ତି ଧ୍ରୁପଦ, ବର୍ଷା କାହିଁ ବର୍ଷା କାହିଁ
ଗ୍ରହମାନେ ଦେବେ ନାହିଁ ପରୀକ୍ଷା, ପକ୍ୱ ଆମ୍ର ହସୁଅଛି ଗଛେ
ରାଜବଧୂ ଜଳାକାଣ୍ଡି, ହେଇ ପାରିବତି ଦେଉଛି ଚକ୍‌କର
ଲଙ୍ଗ୍‌ରେଡ଼େ ହେଲା ଆକ୍‌ସିଡେଣ୍ଟ,
ହେଇ ଗାଈମାନେ କରନ୍ତି ପାକୁଳି

× × ×

ଅଧା ଫୁଲ୍‌ସ୍କେପ୍ ସାଇଜ କାଗଜ ଅକ୍ଷରରେ ପୂର୍ଣ୍ଣ କରିବା ପରେ କଲମ ଅଟକିଗଲା । କାମକଟ୍ଟଙ୍କ ଆଙ୍ଗୁଠି କପ୍ କପ୍ ହୋଇ ନ ଥିଲେ ଆଉ ଦୁଇପୃଷ୍ଠ ଫର୍ଦ୍ଦ କାଗଜ ଅକ୍ଷରପୂର୍ଣ୍ଣ ହୋଇଯାଇଥାଆନ୍ତା ।

କାରଖାନା ପ୍ରସ୍ତୁତ ଜିନିଷ କାରଖାନାର ଗୋଦାମ ଘରେ ପଡ଼ି ରହିଲେ ଉତ୍ପାଦକ, ବଣ୍ଟନକ ଓ ଖାଉଟି କାହାରି ଉପକାରରେ ଲାଗେ ନାହିଁ । କାମକଟ୍ଟ ବଣ୍ଟନକ ଖୋଜିଲେ, ସମ୍ପାଦକମାନଙ୍କ ଉପରେ ଆଖି ବୁଲେଇଲେ । ଖାନା, ଖିଲ (ପାନ), ଖଜୁରୀ (ରସ) ଖୋସାମଦି ଆଦି ଖ'କାର (ମ'କାର ପରି) ପ୍ରୟୋଗ କରି କେତେଜଣ ସମ୍ପାଦକଙ୍କୁ ଖାଲେଇରେ ପୂରେଇଦେଲେ । ଗୋଟା ପରେ ଗୋଟାଏ କବିତା କାଗଜରେ ବାହାରିଲା । ପତ୍ରିକାର ଉନ୍ନତ ଚିନ୍ତାଧାରା, ସମ୍ପାଦକଙ୍କ ବିଚକ୍ଷଣତା, ଅସାଧାରଣ ପ୍ରତିଭା; ଲେଖାଲେଖି ବାଛିବାରେ ଅଲୌକିକ କର୍ମକୁଶଳତା ଓ ପାଣ୍ଡିତ୍ୟପୂର୍ଣ୍ଣ ସମ୍ପାଦକୀୟ ବିଷୟରେ ଘନ ଘନ ଚିଠି ସବୁ ପାଇ ସମ୍ପାଦକମାନେ କୁଲୁରି ଉଠିଲେ । ଏଥିପାଇଁ କାମକଟ୍ଟଙ୍କୁ ଗୁଡ଼ାଏ ପୋଷ୍ଟେଜ୍ ଷ୍ଟାମ୍ପ କଣିବାକୁ ପଡ଼ିଲା ।

ଯେଉଁ ସମ୍ପାଦକମାନେ ହେଯାଏ କାମକବିଙ୍କ 'ଭୁଷ କବିତା ଛାପି ନ ଥିଲେ ସେମାନଙ୍କ ସାଙ୍ଗରେ ତାଙ୍କ ଛଡ଼ିଦାରମାନେ କଣ୍ଡ଼ିଆ ଦେବଦର୍ଶନାର୍ଥୀଙ୍କ ପଛରେ ପଣ୍ଡାଙ୍କ ଗୁମାସ୍ତା ପରି ଲାଗିଗଲେ । ସେମାନେ ବୁଝେଇ ବସିଲେ—'ଭୁଷ୍‌କବିତା' ହେଲା ଏକ ଅଭିନବ ଧରଣର କବିତା । ବହୁପ୍ରକାରର କବିତା ଯଥା ଛନ୍ଦ କବିତା, ଅଛନ୍ଦ କବିତା, ଭକ୍ତି କବିତା, ଚମ୍ପୂ କବିତା, ଇତ୍ୟାଦି ପ୍ରଭୃତି କବିତାପରି ଏହା ଏକ ପ୍ରକାରର । ଥାନ ଅଥାନ, ବେଳା ଅବେଳା ନ ମାନି ସାମାନ୍ୟ କୁନ୍ଥନରେ ଯେଉଁ କବିତା ଭୁଷ୍ କରି ବାହାରି ପଡ଼େ, ତାକୁ ଭୁଷ୍-କବିତା କହନ୍ତି ।

କାମକବି ନିଜେ ଜଣେ ଜଣେ ସମ୍ପାଦକଙ୍କ ପାଖରେ ଗୋଟାଏ ଗ୍ରାହକ ସୁଦ୍ଧା ପଟେଇ ଦେଇ ଭୁଷ୍‌କବିତାର ଉପାଦେୟତା ବିଷୟରେ ଏକ ବୀମା ଏଜେଣ୍ଟଙ୍କ ପରି ଭାଷଣ ଦେଲେ । ଅମୁକ ପତ୍ରିକା ପାଞ୍ଚହଜାର କପି ଥିଲା । ଯେଉଁ ସଂଖ୍ୟାଠାରୁ ସେ କାମକବିଙ୍କ 'ଭୁଷ୍ କବିତା' ଛାପିଲେ ସେହି ସଂଖ୍ୟା ଠାରୁ ତାଙ୍କ ପତ୍ରିକାର କାଟତି ଦଶ ହଜାରକୁ ବଢ଼ିଗଲା । ଅବଶ୍ୟ ଗୋଟିଏ ଗୋଟିଏ ପତ୍ରିକାକୁ କିଛିଦିନ ଅପେକ୍ଷା କରିବାକୁ ପଡ଼ିଲା । ସେମାନେ ଯେମିତି କୁନ୍ଥି କୁନ୍ଥି ହୋଇ ଛାପିଲେ ସେମାନଙ୍କ କାଟତି ସେମିତି ମାଣ୍ଡେଇ ମାଣ୍ଡେଇ ବଢ଼ିଲା । 'ଗଡଗଦା' ପତ୍ରିକାର ସମ୍ପାଦକ ତାଙ୍କ କବିତା ପ୍ରତି ବେଖାତିର କରି ନ ଛାପିଲାରୁ ତାଙ୍କ କାଟତି କମିଯାଇ ପତ୍ରିକା ସବୁ ଖତ ହେଲା ଆଉ ତାଙ୍କ ବଡ଼ପୁଅକୁ ଅକାଳୋବ୍ୟାଧି ହେଲା । ଆସନ୍ତା ସଂଖ୍ୟାରେ ଆପଣ ଗୋଟାଏ 'ଭୁଷ୍ କବିତା' ଛାପନ୍ତୁ । ତା'ପର ସଂଖ୍ୟାଠାରୁ ଦେଖିବେ କେମିତି କାଟତି ବଢ଼ୁଛି !

ସମ୍ପାଦକ ତା ସ୍ତ୍ରୀ ପିଠିରେ ନାତ ମାରିପାରେ; କିନ୍ତୁ ଜଣେ ଗ୍ରାହକ ତାର ଏତେ ପ୍ରିୟ ଯେ ଦରକାର ପଡ଼ିଲେ ସେ ତା'ଠାରୁ ନାତ ଖାଇବା ପାଇଁ ନିଜ ପିଠିକୁ ଦେଖେଇ ଦିଏ । ସେ ତା'ର ବାପା ବୋଉଙ୍କ କଥା ଅବିଶ୍ୱାସ କରିପାରେ; କିନ୍ତୁ ଜଣେ ଗ୍ରାହକର କଞ୍ଚା ମିଛ କଥାକୁ ବେଦର ଗାର ପରି ଗ୍ରହଣ କରିଯାଏ । ସେ ଦର୍ପ ଦା କାଗଜ ମହାଜନ ପାଖରେ ମୁଣ୍ଡ ନୁଆଁଇ ନ ପାରେ; କିନ୍ତୁ ଦରକାର ନ ଥିଲେ ବି ଗ୍ରାହକ ପାଖରେ ଆଣ୍ଠୁଉଥାଏ ।

ସମ୍ପାଦକ କବିଙ୍କ ପାଖରେ କେତେଟା 'ଭୁଷ୍ କବିତା' ଅଛି କି ନା ପ୍ରଶ୍ନ କଲେ । କବି କହିଲେ—ଗୋଟାଏ କାହିଁକି ପାଞ୍ଚଟା ଅଛି । ସବୁଯାକ ରଖ । ଲଗ୍ ଲଗ୍ ଛାପିଲେ ଭାରତର ଜନସଂଖ୍ୟା ପରି ପତ୍ରିକା କାଟତିରେ ବିସ୍ଫୋରଣ ଘଟିବ ।

ଗଳିକନ୍ଦିରେ ଆଉ କେତେ ସମ୍ପାଦକ ବଣମଲ୍ଲୀ ପରି ଅଜଣାରେ ରହି ଯାଇଥିଲେ । ଭୁଷ୍ କବିତା ଭୁଷ୍ ଭୁଷ୍ ହୋଇ ଅନ୍ୟାନ୍ୟ ପତ୍ରିକାରେ ବାହାରୁଥିବାର ଦେଖି ଏଥିରେ ନିଶ୍ଚୟ କିଛି ଲଫାଥିବ ଭାବି କାମକବିଙ୍କଠାରୁ ମଗେଇ ଛାପିଲେ । କାମକବି ପ୍ରଶଂସା ଗଛରୁ ଦହିଦାଉଆଁ ପ୍ରଶଂସା ତୋଳିଲେ ।

ବହିଟାଏ ଛାପା ନହେଲେ ସରକାରୀ କବି ତାଲିକାରେ ଭି ନାଁ ନଉଠେ କାମକବି ଗୁଡ଼ାଏ କବିତା ଗୋଟେଇ ପୋଟେଇ ଗୋଟାଏ ପାଣ୍ଡୁଲିପି ତିଆରି କଲେ ଆଉ ପ୍ରକାଶକମାନଙ୍କ ପାଖକୁ ଧାଇଁଲେ । ଅନେକ ପ୍ରକାଶକ ବିଗିଡ଼ି ଶୁଖୁଆ ବାସ୍ନା ପାଇଲା ପରି ପାଣ୍ଡୁଲିପିରୁ କବିତା ବାସନା ପାଇ ମୁହଁ ବୁଲେଇ ଦେଲେ । ଛପାଛପି ପାଇଁ ଅଣ୍ଟାର ଜୋର୍ ନାହିଁ ବୋଲି କହି ବିଦାୟ କରି ଦେଲେ । କାମକବି ହତୋତ୍ସାହ ନ ହୋଇ ଜଣେ ବନ୍ଧୁଙ୍କ ସଙ୍ଗେ ଗୁପ୍ତରେ ଏକ ମନ୍ତ୍ରଣା କଲେ । କଥା ହେଲା—ସେ ଆଗଯାଇ ଜଣେ ପ୍ରକାଶକ ସାଙ୍ଗରେ କଥାବାର୍ତ୍ତା ଚଳେଇଥିବେ । ଠିକଣା ସମୟରେ ବନ୍ଧୁ ଯାଇ ସେଠି ପହଞ୍ଚିବେ ଆଉ ମନ୍ତ୍ର ଫୁଙ୍କି ଦେବେ ।

ପ୍ରକାଶକଙ୍କ ପାଖରେ ବସି କାମକବି ଟେବୁଲ ଉପରେ ପାଣ୍ଡୁଲିପିଟାକୁ ଥୋଇଦେଲେ । ପ୍ରକାଶକ ସେଇଟାକୁ ମେଲେଇ ଦେଖିଲେ—ସେଇଟା କବିତା । କୁକୁର ମଳରେ ହାତ ବାଜିଗଲା ପରି । ହାତଟାକୁ ଛୁଆଡ଼ିଦେଇ, ମୁହଁକୁ ଚକଟିଆ କରିଦେଇ ବିରକ୍ତିର ସହ କହିଲେ—କାହିଁକି ବାବୁ ଏ ନଈବାଳି ବ୍ୟୟ କରୁଛ ? ପାଠକମାନେ ଭୂଆଁ ବୁଲିବୁଲି ଶେଷକୁ ଏ ଧରଣର କବିତାକୁ ନର୍ଦ୍ଦମାକୁ ଫୋପାଡ଼ିଲେ । କବିମାନଙ୍କୁ ଦୂର ଦୂର କଲେ । ଗୋଟାଏ କଅଣ ମନ୍ତ୍ରି ତା ଭିତରେ ଥିବ ବୋଲି ଭାବି ଆମେ କେତେଜଣ ଗୋଟିଏ ଗୋଟିଏ ଏମିତିଆ କବିତା ବହି ପାଞ୍ଚବର୍ଷ ତଳେ ଛାପିଥିଲୁ । ପାଞ୍ଚବର୍ଷରେ ପାଞ୍ଚଖଣ୍ଡ ବି ବିକି ହେଲା ନାହିଁ । ମହୁଆ ସାଙ୍ଗରେ ଭଲଲୋକ ସାଙ୍ଗ ହେଲେ ଯେମିତି ବେଳେବେଳେ ମାମୁଁଘର ଦେଖେ, ଏ ଧରଣର କବିତା ଲାଗି ଭଲଭଲ କବିତା ବହିକୁ ଲୋକେ ନାକ ଟେକିଲେ, କବିତା ନାଁ ଶୁଣିଲେ ଚିଡ଼ିକଲେ । ବହି ଖୋଲି ତା'ର ସ୍ୱରୂପ ବି ଦେଖିଲେ ନାହିଁ । ଆମେ କାନମୋଡ଼ି ହୋଇ ପ୍ରତିଜ୍ଞା କରିଛୁ ଆଉ କବିତା ନାଁ ଧରିବୁ ନାହିଁ । ଆପଣମାନେ ଏସବୁ କବିତାରେ ସମୟ ନଷ୍ଟ ନ କରି ବରଂ ସରକାରୀ ଋଣ ନେଇ ଅର୍ଥକାରୀ ଧୂପୁରୀ ବ୍ୟପରେ ଲାଗିପଡ଼ନ୍ତୁ ।

ଏତିକିବେଳେ କାମକବିଙ୍କ ସାଙ୍ଗଟି ଦୋକାନକୁ ଉଠିଆସି କହିଲେ, ହଇହୋ ତେଣେ ଶିକ୍ଷାମନ୍ତ୍ରୀ ତୁମକୁ ଖୋଜୁଛନ୍ତି; ତୁମେ ଚାଲିଆସିଲ । ତୁମକୁ କାରରେ ଏଠାକୁ ନେଇ ଆସିବାକୁ ତାଙ୍କ ସେକ୍ରେଟାରୀଙ୍କୁ କହିଥିଲେ । ସେକ୍ରେଟାରୀ ତୁମକୁ ସାଙ୍ଗରେ ଏଠାକୁ ଆଣି ପାଣ୍ଡୁଲିପି ଦେଇଥାଆନ୍ତେ । ଶିକ୍ଷାମନ୍ତ୍ରୀ ମଧ୍ୟ ଶିକ୍ଷାବିଭାଗ ଡିରେକ୍ଟରଙ୍କୁ

ଏ ବହି ଛପା ହେବା ସଙ୍ଗେ ସଙ୍ଗେ ସାତଶହ ପଚାଶ କପି କିଣିନେବାକୁ ଅର୍ଡ଼ର ଦେଇଦେଲେ ତମେ ଚାଲି ଆସିଲ । ତେଣେ ମନ୍ତ୍ରୀ ସେକ୍ରେଟାରୀଙ୍କୁ ବହେ ବକିଲେଣି । ଚାଲ ଚାଲ ମନ୍ତ୍ରୀଙ୍କ ପାଖକୁ ଫେରିଚାଲ । ସେ ସେଇଠି ଫୋନ୍‌ରେ ଜଣେ ପ୍ରକାଶକଙ୍କୁ ଡାକି ବରାଦ କରିଦେବେ ।

କାମକବି ଟିକିଏ ଗମ୍ଭୀର ହୋଇଯାଇ କହିଲେ—ମାମୁଁଙ୍କୁ ଦାଲେ କିଏ କହିବ ମନ୍ତ୍ରୀ ହୋଇଛନ୍ତି ବୋଲି ପ୍ରିୟାପ୍ରୀତି କରି ଭଣଜା ବହିକୁ ଛପାଇ ଦେଲେ । ତାଙ୍କର ଦୁର୍ନାମ ହେବାଭଳି କାମ ମୁଁ କରିବି ନାହିଁ । ମୋ ନିଜ ଗୋଡ଼ରେ ମୁଁ ଠିଆ ହେବି !

ପ୍ରକାଶକଙ୍କ ତଣ୍ଟି ସେତେବେଳକୁ ଶୁଖିଯାଇଥିଲା । ସେ ପାଣ୍ଡୁଲିପିର ପନ୍ନ-ଗୁଡ଼ାକ ଏପାଖ ସେପାଖ ଓଲଟାଇ ଲାଗିଥାଆନ୍ତି । ହଠାତ୍ ସେ ବଲବଲେଇ ଉଠିଲେ—ଆରେ, ଏ କବିତାଗୁଡ଼ାକ କି ବିଚକ୍ଷଣ । କି ଉଚ୍ଚଧରଣର ହୋଇଛି । ଆଃ କି ଆଙ୍ଗିକ, କି ଅର୍ଥିକ । ଅଃ, କି ସୁନ୍ଦର ପ୍ରତୀକବାଦ । ଆହାହା ତ ରୂପକଳ୍ପ । ଶତାବ୍ଦୀର ଏହା ସର୍ବଶ୍ରେଷ୍ଠ କବିତା ପୁସ୍ତକ ହେବ । ଅଜ୍ଞା, ଆପଣ ଏହାକୁ ଲେଖିଛନ୍ତି ? ମୁଁ ଏହାକୁ ଫଟାଫଟ ଛାପିଦେବି । ମୋତେ ଦିଅନ୍ତୁ ।

ଅନିଚ୍ଛାସତ୍ତ୍ୱେ କାମକବି ପାଣ୍ଡୁଲିପିଟି ଦେଇ କହିଲେ—ଦେଖନ୍ତୁ, ମାମୁଁ ଆଉ ଜଣଙ୍କୁ ଦେବେ ବୋଲି କହୁଥିଲେ । ଆପଣ ଶୀଘ୍ର ଛାପି ଦିଅନ୍ତୁ । କଥାଟା ଗୁପ୍ତ ରଖିବେ । ଛପା ହୋଇସାରିଲେ ମୁଁ ମାମୁଁଙ୍କୁ ଦେଖାଇ ଛାପା ହୋଇସାରିଲାଣି ବୋଲି କହି ଡିରେକ୍ଟରଙ୍କଠାରୁ ସାତଶହ ପଚାଶ କପିର ଅର୍ଡ଼ର ନେଇ ଆସିବି ।

× × ×

ସପ୍ତାହକ ଭିତରେ ନାନା ରଙ୍ଗରେ ସୁଶୋଭିତ ହୋଇ କାମକବିଙ୍କର ପ୍ରଥମ କବିତା ପୁସ୍ତକ 'କଙ୍କିର କେରୁଆଳ' ପ୍ରକାଶ ପାଇଗଲା ।

କାମକବିଙ୍କ ଖୋଷାମଦର ଅତ୍ୟାଚାରରେ ଜର୍ଜରିତ ହୋଇ ପତ୍ରପତ୍ରିକା ସମ୍ପାଦକମାନେ ତ୍ରାହି ତ୍ରାହି ଡାକ ଛାଡ଼ିଲେ । ସେଥିରୁ ରକ୍ଷା ପାଇବା ଲାଗି ବିକଳରେ ନିଜ ନିଜ ପତ୍ରିକାରେ ଏହି ପୁସ୍ତକର ତରନ୍ତରିଆ ସମାଲୋଚନା ଗୋଟାଏ ଲେଖାଏଁ ଛାପି ନିଃଶ୍ୱାସ ମାରିଲେ । ପରସେଣ୍ଟର ପ୍ରଲେପ ବହିରେ ମାରିଦିଆଯିବାରୁ ହେଇଟା ଲାଇବ୍ରେରୀ ବହି ଭିତରେ ଗୋଳେଇ ପୋଳେଇ ହୋଇଗଲା । ବହିଟି ଏପରି ଦିଗ୍‌ବିଜୟ କରିବାରେ ଲାଗିଲା ।

ସାଙ୍ଗର କାନ୍ଧରେ ହାତ ପକାଇ କାମକବ କହିଲେ; ବୁଝିଲୁ ସାଙ୍ଗ, ଏବେ ମୋ ଦୂରବୀନରେ କେନ୍ଦ୍ର ଅକାଦମୀ ଜକ୍‌ଜକ୍ ହୋଇ ଦିଶିଲଣି । ସାଙ୍ଗ କହିଲା—ତେବେ ଦର୍‌ବାଜସ୍ତ ଦାଖବାକୁ କଅଣ ସେଯାଏ ଯିବାକୁ ପଡ଼ିବ ? ଦୂର ! ସେଠି ଅଛୁ ଶାଳ୍ ମୁଣ୍ଡଟା । ଅଙ୍ଗପ୍ରତ୍ୟଙ୍ଗ ସବୁ ଏଇଠି ଅଛୁ । ଆଙ୍ଗପ୍ରତ୍ୟଙ୍ଗଙ୍କୁ କାବୁ କରିଦେଲେ ମୁଣ୍ଡଟା ଗୁଏଁ ଗୁଏଁ କାବୁ ହୋଇଯିବ । ଏଇମାସ ଭିତରେ ମୋତେ ପାଞ୍ଚ ଛଅଟା ବହି ଯେ କୌଣସି ପ୍ରକାରେ କାଢ଼ିବାକୁ ହେବ । ତା'ପରେ କେନ୍ଦ୍ର ବେଶି ଦୂର ନୁହେଁ ।

**

# ଓଡ଼ିଆ ପାଠ

ଶିକ୍ଷା ନିର୍ଦ୍ଦେଶକଙ୍କର ତାର୍ ଅଲ୍ଟିମେଟମ୍ ଫଟେଇ ଦେଲା । ସଢ଼ିବା ଗର୍ଭରୁ ଭସ ଭସ କରି ନିଆଁ ବାହାରିଲା ପରି ସେ ନିଜ ପେଟରୁ କ୍ରୋଧାଗ୍ନି ଭସ ଭସ କରି ଉଦ୍‌ଗାରିବାରେ ଲାଗିଲେ । ଏଇଟା ଶିକ୍ଷା ବିଭାଗକୁ ଏକ ଆହ୍ୱାନ । କି ନିଆଁ ଗିଳା ସାହସ ତାର ! ଅଧ୍ୟାପକଟାଏ ମାତ୍ର, ନିଯୁକ୍ତି ପାଇଲାବେଳେ ପିଅନଠାରୁ ଆରମ୍ଭ କରି ମନ୍ତ୍ରୀଙ୍କ ଯାଏ କେତେ ପିମ୍ପା ତେଲ ଖର୍ଚ୍ଚ ନ କରିଥିବ, କେତେ ସିଭିଙ୍ଗୀ ଠାଣିରେ ମୁଣ୍ଡ ପଛଟା କୁଣ୍ଡେଇ ନ ଥିବ, କେତେ ହାଣ୍ଡି ମିଠାଇ ନେଇ ସ୍ୱା ପିଣ୍ଡାରେ ଧାରଣା ଦେଇ ନ ଥିବ । କେତେ ଚକୋଲେଟ୍ 'ସ୍ୱା'ଙ୍କୁଆ ଶା'ଙ୍କୁଆଙ୍କୁ ବାଣ୍ଟି ନ ଥିବ, ସ୍ୱା-ଶା ପାଖରେ କେତେ ଗୋଡ଼ ଘଷି ନ ଥିବ, କେତେ ବେଢା ଉପସ୍ଥାର ଅମ୍ଳାନ ବଦନରେ ହଜମ ନ କରିଥିବ, ଆଜି ସେ ପୁଣି 'ଗେଣ୍ଡାରୁ ଶଙ୍ଖ' ପାଲଟି ଗଲାଣି । କି ଯୁଗ ହୋଇଗଲା ।

'ଅପଦାର୍ଥଟା ଚରମପତ୍ରର ଗୋଟାଏ କାରଖାନା ଖୋଲିଛି ।'

ଉପନିର୍ଦ୍ଦେଶକ ମୁଣ୍ଡ ପଛଟା କୁଣ୍ଡେଇ କୁଣ୍ଡେଇ କହିଲେ—ଆଜ୍ଞା ଚରମପତ୍ରର କାରଖାନାଟାଏ ! ସେପରି କାରଖାନାଟାଏ ହେଲା କେଉଁଠି, ତାକୁ ଲାଇସେନ୍ସ ଦେଲା କିଏ ! ଆଜ୍ଞା ଅଜବ୍ କଥା ଶୁଣେଇଲେ ।

ନିର୍ଦ୍ଦେଶକ ଟିକିଏ ହସିଦେଇ କହିଲେ—ହେଇ ଦେଖ, ଇଏ ଗୋଟାଏ ଚରମପତ୍ର । ଏ ଅଧ୍ୟାପକଟି ସ୍ୱାକ୍ଷର କରିବା ପୂର୍ବରୁ ସିଧା ହୋଇ ଠିଆ ହୋଇପାରୁ ନଥିଲା । ସିଭିଙ୍ଗୀ ଠାଣିରେ କେତେ ଲୋକଙ୍କ ପାଖରେ ଠିଆ ହୋଇ ହୋଇ ବଙ୍କା ହୋଇଯାଇଥିବ ! ପାଟିରୁ ଛେଳିପରି ମେ ମେ ହୋଇ କଥା ବାହାରୁ ନ ଥିବ । ସ୍ୱାକ୍ଷର ପାଇବାର କେଇଟା ବର୍ଷରେ ସେ ପୂରା ବାଘ ପାଲଟିଗଲାଣି । ଚରମପତ୍ର ଉପରେ ଚରମପତ୍ର ମୋ ଉପରେ ଅଜାଡ଼ି ପକାଉଛି । ବ୍ରିଟିଶ୍ ସରକାର ହୋଇଥିଲେ 'ଚ' ଅକ୍ଷର କହିବା ମାତ୍ରେ ତାକୁ ଆଉ ତା ବଇଁଶକୁ ଘୋଷାଡ଼ି ନେଇ ଜେଲ୍‌ରେ ଠୁଙ୍କି ଦେଇଥାନ୍ତା ।

ନିଜ ସରକାର ବୋଲି ଏତେ ଉମ ଦେଖାଉଛି ସେ 'ଚରମ' ଅଧ୍ୟାପକଟି ଯେଉଁଥିଲାଗି ଦରମା ନେଉଛି ତାର ନାଆଁ ନେବା ଧରୁନ । ତା କାମ ହେଲା କାର୍‌ରେ ଓଡ଼ିଶାର ସବୁ କଲେଜରେ ପଶି ସବୁ ଅଧ୍ୟାପକଙ୍କ ଅଧ୍ୟାପନା ଛାଡ଼ି ତା ପଛରେ

ଅଣନିଃଶ୍ୱାସି ହୋଇ ଦଉଡ଼ିବା, ଯୁନିଅନ ଭିତରେ ମୋତେ ମନଇଚ୍ଛା ଗାଳିଦେଇ ନୂଆ ନୂଆ ଗାଳି ପଦ୍ଧତି ବା ଟେକ୍‌ନିକ୍ ସୃଷ୍ଟି କରିବା ଓ ନେତା ପାଲଟି ସଙ୍ଗୀ ଅଧ୍ୟାପକ-ମାନଙ୍କ ଉପରେ ହୁକୁମ ଜାରି କରିବା ଆନ୍ଦୋଳନ ତର୍ଜନ ଗର୍ଜନ କରି ନିଜର ଓ ନିଜ ଗୋଷ୍ଠୀର ଉନ୍ନତି କରିବା ହେଲା ଏହାର ଏକକାଳୀନ କାମ । କାହିଁ ? ଛାତ୍ରଛାତ୍ରୀମାନଙ୍କ ଉନ୍ନତିକଲେ ପଦଟିଏ ତ କହୁନି ଛାତ୍ରଛାତ୍ରୀମାନେ କିପରି ପାଠପଢ଼ାରେ ମନ ଦେବେ, ପରୀକ୍ଷାରେ କପି କରିବାକୁ ଘୃଣା କରିବେ, ଉଚ୍ଛୃଙ୍ଖଳତାକୁ ଏକାବେଳକେ ବର୍ଜନ କରିବେ ସେଥିପାଇଁ କିଛି କାମ କରୁନାହାନ୍ତି କାହିଁକି ? ଯାହାଙ୍କ ପାଇଁ ସୃଜିତ ତାଙ୍କୁ ପୂରାପୂରି ଭୁଲିଗଲେଣି । ତଥାପି ମୋ ପାରୁପର୍ଯ୍ୟନ୍ତ ମୁଁ ସେମାନଙ୍କ ଦାବି ପୂରଣ ପାଇଁ ଚେଷ୍ଟା କରୁଛି । ହେଲେ ମୋ ଉପରେ ଶିକ୍ଷାସଚିବ, ତାଙ୍କ ଉପରେ ମନ୍ତ୍ରୀ ମୋରି ପାଖରେ ଆସି ଝଗଡ଼େଇ ହେଉଛି । ଚାଲିଯାଉନି ମନ୍ତ୍ରୀଙ୍କ ପାଖକୁ ସେଠି କାଚ୍‌ମୂର୍ଦ୍ଧନ ପଣିଆ ଦେଖାନ୍ତି—

—ଏ ଥର ଚଳମପକ୍ଷରେ ସେ କଅଣ ଦାବୀ କରିଛନ୍ତି ?

—ଏଥର ଅବଶ୍ୟ କେତେଟା ସଙ୍ଗତ ଦାବୀ ଅଛି । ସରକାର ଗୋଟାଏ ଆଦେଶ ଦେଇଛନ୍ତି ଯେ, ଯେଉଁ ଅଧ୍ୟାପକ ଡକ୍ଟରେଟ୍ ସନନ୍ଦ ଯୋଗାଡ଼ ନ କରିପାରିବ ତାର ବେତନ ବୃଦ୍ଧି ବନ୍ଦ । ଏଇଟାକୁ ପ୍ରତ୍ୟାହାର ନ କଲେ ଆନ୍ଦୋଳନର ଧମକ, ଧାରଣା ଓ ଅନଶନର ଧମକ ।

—ପ୍ରକୃତରେ ଦେଖିବାକୁ ଗଲେ ଏ ଆଦେଶଟା ଠିକ୍ ହେଲ ନାହିଁ । ଆଗରୁ ନିଯୁକ୍ତି ଦେଲାବେଳେ ଏ ସର୍ତ୍ତ ନ ଥିଲା । ନିଯୁକ୍ତି ଅନୁସାରେ ସମସ୍ତେ ବେତନ ବୃଦ୍ଧିର ହକ୍‌ଦାର । ତା ଉପରେ ହସ୍ତକ୍ଷେପ କରିବା ଅର୍ଥ କ୍ଷମତାର ପକ୍ଷରେ ହିଁ ଅପବ୍ୟବହାର ଡକ୍ଟରେଟ୍ ହୋଇଗଲେ ଯଦି ଜଣେ କିଛି ଅଧ୍ୟାପକ ପାଗଳ ହୋଇଯାଆନ୍ତି ବୋଲି ସରକାର ଭାବୁଥାଆନ୍ତି, ତେବେ ସେମାନଙ୍କୁ ଗୋଟାଏ ଅଧିକା ପ୍ରଲୋଭନ ଦେଖାଇ ଦିଆଯାଉ, ଡକ୍ଟରେଟ୍ ପାଇଁ ଗୋଟାଏ ଅଧିକା ଆଲାଉନସ୍ ଦିଆଯାଉ । ତାହେଲେ ବହୁ ଅଧ୍ୟାପକ ଡକ୍ଟର ହେବା ପାଇଁ ଲାଗିପଡ଼ନ୍ତେ । ତା ନ କରି ପୂର୍ବ ସର୍ତ୍ତକୁ ପ୍ରତ୍ୟାହାର କରିନେବାରେ ନା ଅଛି ବିଜ୍ଞତା, ନା ଅଛି ବିଚକ୍ଷଣତା, ଅବୁଝାମଣା ମନ୍ତ୍ରୀକୁ ପାଲଟୁଣ୍ଡା ସଚିବ ଯାହା ବୁଝାଇଲା ସେଇଆ ହେଲା । ଦୁହିଁଙ୍କ ବୁଦ୍ଧିରେ ମରୁଡ଼ି ।

ମନ୍ତ୍ରୀ ଓ ସଚିବ ଦେଉଳ ତୋଳନ୍ତୁ ବା ବାଟରେ ହଗନ୍ତୁ ସେଥିରେ ଆମର ମୁଣ୍ଡ ଖେଳାଇବା ଦରକାର ନାହିଁ । ଗୋଟାଏ କାମ କରନ୍ତୁ, କେତେଜଣ ଅଧ୍ୟାପକଙ୍କୁ

ହାତକରି ସେମାନଙ୍କ ଭିତରେ ଗୁପ୍ତଚର ଭାବରେ ପୂରାଇ ଦିଅ । ସେମାନେ ଯେପରି ସମସ୍ତଙ୍କୁ ଅମଡ଼ା ବାଟରେ ମଡ଼େଇ ନେଇନିବେ । ଗୋଡ଼ ହାତରେ କଣ୍ଟା ପଶିଲେ ସେମାନେ ଆଉ ଆଗେଇବେ ନାହିଁ । ସେମାନଙ୍କ ଭିତରେ ଏକତା ନ ରହିଲେ ଆମେ ସେମାନଙ୍କ ଆନ୍ଦୋଳନ ମନୋବୃତ୍ତିକୁ ଲୋପ କରିଦେବା ।

—ହଉ ଆଜ୍ଞା ଚେଷ୍ଟା କରିବା, ଫଳାଫଳ ପ୍ରତି ଅପେକ୍ଷା କରିବା ନାହିଁ । ଆମେ ଗୀତା ବାଟରେ ଯିବା । 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ'—ଏତକ କହି ଉପନିର୍ଦ୍ଦେଶକ କୂଟନୀତିର ଜାଲ ବିଛେଇବାକୁ ଲାଗିଲେ । ଶିଖିମନେଇ ଅଧ୍ୟାପକମାନେ ନିଜ ନିଜ ଧନ୍ଦାରେ ଲାଗିଗଲେ । କେତେମାସ ପରେ ଉପନିର୍ଦ୍ଦେଶକ ନିର୍ଦ୍ଦେଶକଙ୍କୁ ଏକାନ୍ତରେ ଭେଟିଲେ । ନିର୍ଦ୍ଦେଶକ ବିବ୍ରତ ହୋଇ କହିଲେ—ଆହେ କଅଣ କିଛି କଲ କିଛି ଜଣାପଡ଼ୁନି ତ । ଚରମ ଅଧ୍ୟାପକ ବାଟକୁ ଆସିବାର କିଛି ଲକ୍ଷଣ ଦିଶୁନାହିଁ ତ । ତା କାମ ଓ ବ୍ୟବହାରରୁ ଜଣାପଡ଼ୁନି । ସେ ତ ନିଜକୁ ନିର୍ଦ୍ଦେଶକ ଆଉ ଆମକୁ ଅଧ୍ୟାପକ ବୋଲି ବିଚାର କଲଣି । ହଇହେ କି କାଳ ହେଲା ସେ ପୁଣି ଆମଠୁଁ କୈଫିୟତ ତଲବ କରୁଛି । ଛେରୁଆ ମନ୍ତ୍ରୀଙ୍କୁ ସବୁ କଥା ଜଣେଇଲେ ବି କିଛି ଫଳ ହେଉନି । ସବୁ କଥାକୁ ସେ ସ୍ରେଟ୍ ନିଜଠରେ ତଉଲ କରୁଛନ୍ତି । ଏ ଅଧ୍ୟାପକଟିକୁ ଅଲ୍‌ବିଦା କରିଦେଲେ ଆସନ୍ତା ନିର୍ବାଚନରେ ମୋ ଶ୍ରେଷ୍ଠତା କମିବ ନା ବଢ଼ିବ । କମିବାର ସମ୍ଭାବନା ବେଶି ଦେଖିଲେ କହିଦେବେ ମୁଁ କିଛି କରିବିନି । ଆଇନ୍‌କୁ ତା ବାଟ ଛାଡ଼ିଦିଅ । ସେ ତା' କାମ କରୁ । ଯଦି ଦେଖିବେ ଯେ ସେ କାମରେ ନିଜ ଦଳର ଲୋକେ ଖୁବ୍ ଆନନ୍ଦିତ ହେବେ ଆଉ ଅଧିକ ଶ୍ରେଷ୍ଠର ସମ୍ଭାବନା ହେବ, ତେବେ ସେ ଆଇନ ପାଖିରେ ମଣ୍ଡାଙ୍ଖପୁରେଇ ସଚିବଙ୍କ ପିଠି ଆପୁଡ଼େଇ ଦେଇ ଆଇନ କାମଟା ଗୁପ୍ତରେ କରିଦେବାକୁ ସଚିବଙ୍କ ମୁଣ୍ଡରେ ଦାୟିତ୍ୱ ଲଦି ଦେଇ ନିଜ ହାତକୁ ଗଙ୍ଗାଜଳରେ ଧୋଇଦେବେ । ଏବେ ଏ ଚରମ ଅଧ୍ୟାପକ ଆଉ ତା ୟୁନିଅନକୁ କଲେବଲେ କୌଶଳେ ଜବତ କରିବାକୁ ମନ୍ତ୍ରୀ ସଚିବଙ୍କ ମୁଣ୍ଡରେ ଲଦିଦେଇ ନିଶ୍ଚିନ୍ତ ହୋଇଯାଇଛନ୍ତି । ସଚିବ ସେଇଟାକୁ ଆମ ମୁଣ୍ଡରେ ଲଦିଦେଇ ନିଶ୍ଚିତ ହୋଇଯାଇଛନ୍ତି । ଏବେ ଆପଣ କଅଣ କରୁଛନ୍ତି କରନ୍ତୁ ।

ଆମେ ଟ୍ରାନ୍‌ସଫର ବାଣମାରି ବିଫଳ ହୋଇଛୁ । ବଦଳିପରେ ବଦଳି କରି ତା ହାଣ୍ଡିରେ କଳା ଲଗେଇ ଦେଲୁନି ତଥାପି ତାକୁ ଜବତ କରି ହେଲାନି । ଯେଉଁଠିକୁ ସେ ଗଲା ସେଠି ନିଆଁ ଲଗେଇଲା । ସବୁ ଅଧ୍ୟାପକଙ୍କୁ ମତେଇଲା । ତା ୟୁନିଅନ ଆହୁରି ଆହୁରି ଟାଣହେଲା । ବେଶି ବେଶି ଅଧ୍ୟାପକ ତା ୟୁନିଅନରେ ସଭ୍ୟ ହେଲେ । ସେ ପନ୍ଥା ବିଫଳ ହେଲା । ସସ୍‌ପେଣ୍ଡ, ଡିସ୍‌ମିସ୍ ଆଦି ଭୟ ପ୍ରଦର୍ଶନକୁ

ସେ ହସରେ ଉଦ୍ବେଗ ଦେଖୁଛୁ । ଓଲଟି କହୁଛୁ, କଂସର ଘର ପାଖକୁ କୁଳ ଛାଡ଼ି ଛାଡ଼ି କରୁଛୁ ।

—ଆଜ୍ଞ ଗୋଟାଏ କିଛୁ ପନ୍ଥା କାଢ଼ିବାକୁ ହେବ । ତାକୁ ଜବତ କରିବାକୁ ହେବ ତା ନହେଲେ ନିଜେ ଜବତ ହୋଇ ଘରେ ଚୁପ୍‌ଚାପ ବସି ରହିବାକୁ ହେବ । ଏହି ଦୁଇ ପନ୍ଥା ଛଡ଼ା ଅନ୍ୟ ପନ୍ଥା ନାହିଁ ।

—ଆପଣ ଆସିବା ଆଗରୁ ଆମେ ଜବତ କରିବାକୁ ତାକୁ ଗୋଟାଏ ଅପଲ୍ଲିଗ ଥାନରେ ରଖିଦିଆଯାଇଥିଲା । କୃଷ୍ଣଙ୍କୁ ନ ଦେଖି ଗୋପୀମାନେ ଯେମିତି ବାତ୍ୟାଣୀ ହୋଇଯାଉଥିଲେ, ଅନ୍ୟ ଅଧ୍ୟାପକମାନେ ଠିକ୍ ସେମିତି ବାତ୍ୟା ହୋଇଗଲେ । କ୍ଲାସରେ ସରକାର ବିରୋଧୀ ପାଠସବୁ ପଢ଼େଇଲେ । ଆଜି ଆମ ୟୁନିଅନ ଉପରେ ଆଟମ୍ ବମ୍ ପକାଯାଇଛୁ । କାଲି ତୁମ ୟୁନିଅନ ଉପରେ ପଡ଼ିବ । ପିଲାଏ ସାବଧାନ ବୋଲି କ୍ଲାସମାନଙ୍କରେ ଲେକ୍‌ଚର ଦିଆଗଲା । ଗୋଠ ମାଇଲେ ଖଣ୍ଡିଆ ବ ମାଡେ । ଅଧ୍ୟାପକମାନଙ୍କର ସିନା ସରକାରକୁ ଡର । ସ୍ବାଧୀନଚେତା ପିଲାମାନଙ୍କର ଡର କାହାକୁ ? ସେମାନେ ସ୍କୁଲକଲେଜ୍‌ର 'ଗୋଟ ସ୍ଲୁଇସ୍) ଖୋଲି ଦେଲେ । ସରକାର ଡରିଯାଇ ଅଧ୍ୟାପକଙ୍କୁ ଫେରାଇ ଆଣିଲେ ।

ଗୋଲମାଲର ମାତ୍ରା ବଢ଼ିଯିବାରୁ ମନ୍ତ୍ରୀଙ୍କ ବାସଗୃହରେ କବାଟବନ୍ଦ ବୈଠକ ବସିଲା । ବହୁ ଆଲୋଚନା ପରେ ବ କିଛୁ ଠିକ୍ ହୋଇପାରିଲାନି, ମନ୍ତ୍ରୀଙ୍କର ଜଣେ ବୋଲକରା ସବୁ ଶୁଣିସାରି କହିଲେ—ଆଜ୍ଞା, ଆପଣମାନେ ରାଜ୍ୟର ଏଡ଼େ ଏଡ଼େ ବଡ଼ ଗଣ୍ଠି ଫିଟେଇ ଦେଉଛନ୍ତି, ଏଇ ସାମାନ୍ୟ ଗଣ୍ଠିଟା ଫିଟେଇବାକୁ ଏତେ ମୁଣ୍ଡବ୍ୟଥା କାହିଁକି ? ମୋର ଗୋଟେ କଥା ମାନି ଓଡ଼ିଓ ପାଥ୍ ଚିକିତ୍ସା କରନ୍ତୁ । ସବୁ ଠିକ୍ ହୋଇଯିବ । 'ଓଡ଼ିଓ ପାଥ୍' ନାଆଁ ଶୁଣି ସମସ୍ତେ ମୁହଁ ଚାହାଁଚାହିଁ ହେଲେ । ଏଇଟା କେମିତିଆ ପାଥି ବୋଲି ସମସ୍ତେ ପଚରା ପଚରି ହେଲେ । ଶେଷରେ ଓଡ଼ିଓ ପାଥ୍ ଡାକ୍ତରଙ୍କୁ ପଚରାଯିବାରୁ ସେ କହିଲେ—ଆଜ୍ଞା, ସେ ଅଧ୍ୟାପକଟି ସମସ୍ତଙ୍କ ପାଇଁ ବହୁ ପରିଶ୍ରମ କରୁଛୁ, କଷ୍ଟ ପାଉଛୁ, ସେଥିଲାଗି ସମସ୍ତେ ତାକୁ ଭଲ ପାଉଛନ୍ତି । ତାର କଷ୍ଟ ଦୂର କରିଦିଅନ୍ତୁ, ତାକୁ ସୁଖ ଶାନ୍ତିରେ ରଖନ୍ତୁ, ସେ ଯେପରି ବହୁତ ଧନ ପାଇବ ତାର ବ୍ୟବସ୍ଥା କରିଦିଅନ୍ତୁ—ଦେଖିବେ ସମସ୍ତେ ତାକୁ ଦୂର୍ ଦୂର୍ ମାର୍ ମାର୍ କରିବେ । ନାନା ଷଡ଼ଯନ୍ତ୍ର କରି ତାକୁ ଗାତରେ ପକାଇବାକୁ ଚେଷ୍ଟା ଚଳେଇବେ । ଅଯଥାରେ ଅଳୁଡ଼ିଙ୍କଗୁଡ଼ାକ ଏପରି ହେଉଥିବାର ଦେଖି ସେ ମଧ୍ୟ ହ୍ରାଂସ ହୋଇଉଠିବ, ଏହି ଈର୍ଷା ଉଦ୍ରେକକାରୀ ବ୍ୟବସ୍ଥାଟା ହେଲା ଓଡ଼ିଓ ପାଥ୍ । ଓଡ଼ିଆମାନଙ୍କ ଭିତରେ ଏ ପାଥିଟା ସୀମାବଦ୍ଧ ବୋଲି ତା ନାଆଁ ଓଡ଼ିଓ ପାଥ୍ ।

ସମସ୍ତଙ୍କ ମନକୁ କଥାଟା ପାଇଗଲା । ମନ୍ତ୍ରୀ ବି ଓଡ଼ିଓ ପାଥିକୁ ପ୍ରୟୋଗ କରିବାକୁ ସମ୍ମତି ଦେଲେ ।

ତରୁଣ ଅଧ୍ୟାପକଙ୍କୁ ଅସ୍ଥାୟୀ ସାହିତ୍ୟ ଏକାଡେମୀର ସେକ୍ରେଟେରୀ କରି ଦିଆଗଲା । ଗୋଟାଏ ନୂଆ ଆମ୍ବାସଡର କାର ତାଙ୍କ ପାଇଁ ଖଞ୍ଜାଗଲା, ତାଙ୍କ କୋଠରୀକୁ ଶୀତତାପନିୟନ୍ତ୍ରିତ କରାଗଲା । ସେ କେବଳ ମନ୍ତ୍ରୀ ଓ ସଚିବଙ୍କ ପାଖରେ ଚଳ ପ୍ରଚଳ ହେଲେ । ଅବ୍ୟର୍ଥ ଓଡ଼ିଓ ପାଥି ଔଷଧ ପରି କାମ କଲା ।

ଅଧ୍ୟାପକମାନେ ଏକସ୍ୱରରେ ଚିଲେଇ ଲାଗିଲେ—ଆରେ ସେଇଟା ଏଡ଼େ ପେଞ୍ଚୁଆ ବୋଲି କିଏ ଜାଣିଥିଲା ! ଏଇତକ ପାଇବାଲାଗି ଆମକୁ ଭୂଆଁ ବୁଲାଉଥିଲା ! ଅନ୍ତର୍ଘାତୀ ସେ ବଦମାସଟାକୁ ବାହାର କର । ଫେର୍ ଏଠାକୁ ଆସିଲେ ଗଣ୍ଡିଆ ଚପଲରେ ତା ଗାଲକୁ ଦେବୁ ଥୋଇ । ତରୁଣ ଅଧ୍ୟାପକଙ୍କ ମନ ମଧ୍ୟ ବିଷେଇ ଉଠିଲା । ସେ ଭାବିଲେ—ଛି. ଛି, ଏ ଅକୃତଜ୍ଞ ପଶୁଗୁଡ଼ାଙ୍କ ପାଇଁ ମୁଁ ଏତେ ଯାହା ଲଢ଼େଇ କଲି । ମୋତେ ଧିକ୍ ।

ମନ୍ତ୍ରୀ ସଚିବ ଓ ନିର୍ଦ୍ଦେଶକ ଏକା ସ୍ୱରରେ ଧ୍ୱନି ଦେଲେ—'ଓଡ଼ିଓ ପାଥି ଜିନ୍ଦାବାଦ ।'

—*—

# ପାଣି ଜୟନ୍ତୀ

ସେ ସବୁ ସ୍ୱର୍ଗରେ ରାଧାନାଥ, ଗଙ୍ଗାଧର, ନନ୍ଦକିଶୋର, ଲାଳଚରଣ ପ୍ରଭୃତି କବିମାନେ ବୈଷ୍ଣବ ପାଣିଙ୍କୁ କହିଲେ—ହଇହେ ପାଣିଦେବ ! କୁମାର ପୂର୍ଣ୍ଣିମୀ ତ ପାଖେଇ ଆସିଲା । ଏଥର ଚାଲନ୍ତୁ ସମସ୍ତେ ମର୍ତ୍ତ୍ୟକୁ ଯିବା ଆଉ ଆପଣଙ୍କ ଭକ୍ତମାନଙ୍କ ଜୟନ୍ତୀ ସେଠାରେ କେମିତି ହେଉଛି, ତାହା ଦେଖିବା, ଆଉ ଆପଣଙ୍କ ଭକ୍ତମାନଙ୍କ ସହ ମିଶି ଉତ୍ସବଟିକୁ ଉପଭୋଗ କରିବା । ଆପଣଙ୍କ ଜନ୍ମସ୍ଥାନଟିର ଅବସ୍ଥା କିପରି ହୋଇଛି ସ୍ୱଚକ୍ଷୁରେ ଦେଖିଆସିବା । ଖବରକାଗଜବାଲାଙ୍କୁ ଆଉ ବିଶ୍ୱାସ କରି ହେବନି । ଜଣେ ଯଦି ଲେଖୁଛି ସଭାରେ ୫୦ହଜାର ଲୋକ ଥିଲେ, ଆଉ ଜଣେ ଲେଖୁଛି ସଭାକୁ କେହି ନ ଆସିବାରୁ ସଭାଟିକୁ ବାତିଲ କରିଦିଆଗଲା । ସେମାନେ ବୁଝିବାକୁ ଚେଷ୍ଟା କି କରୁନାହାନ୍ତି ଯେ ପାଠକମାନେ ଦୁଇଜଣଙ୍କୁ ଗାଲୁଆ, ବାହାପିଆ ବୋଲି ବିଚାରିବେ । ଜଣେ ଲେଖୁଛି ବନ୍ୟାରେ ନିଶ୍ଚିହ୍ନ ହୋଇଯାଇଛି ତ ଆଉ ଜଣେ ଲେଖିଲାଣି "ବନ୍ୟାରେ କୌଣସି କ୍ଷୟକ୍ଷତି ଘଟିନି । ବରଂ ମାଛ ଖାଇ ଖାଇ ଲୋକେ ଗର୍ଦ୍ଧିଆ ହୋଇଗଲେଣି । ଲୋକେ ଓଲଟା ପ୍ରାର୍ଥନା କରୁଛନ୍ତି—ହେ ଭଗବାନ ! ଆଜିକାଲି ବାରମାସୀ ଏମିତି ବନ୍ୟା ହେଉଥାଉ । କ୍ଷତି ଭିତରେ ଏତିକି ହୋଇଛି ଯେ ବି.ଡି.ଓ.ଙ୍କ ପୋଷା ବିରାଡ଼ିଟି ପାଣିରେ ଭାସିଯାଇଛି ।" ଖବରକାଗଜମାନଙ୍କର ମାନମହତ ଯେ କ୍ରମେ କମିଯାଉଛି, ତାହା ସମ୍ପାଦକ କି ସମ୍ବାଦଦାତା କେହି ଉପଲବ୍ଧି କରିପାରୁ ନାହାନ୍ତି । ଏଥର ଆମେ ସମସ୍ତେ ଯାଇ ସ୍ୱଚକ୍ଷୁରେ ଆପଣଙ୍କ ଜୟନ୍ତୀ ଉତ୍ସବ ଦେଖି ଆସିବା ।

ବୈଷ୍ଣବ ପାଣି ପଡ଼ିଲେ ଟିକିଏ ଦବିଗଲେ, ଭାବିଲେ ଜୀଇଁଥିଲା ବେଳେ ତ ସେଠି ଲୋକେ ଓ ସରକାର ମୋତେ ଊଣା ହଲପଟା କରିନାହାନ୍ତି, ଏବେ ଯଦି ମୋତେ ସେଠି ଚିହ୍ନି ପକାଇବେ ତେବେ ହୁଏତ ପୂର୍ବକଥା ମନେ ପକାଇ ବାକିଥିବା ମନ ଅରମାନ ମେଣ୍ଟେଇ ଦେବେ । ମୁଁ ହଲପଟା ହେଲେ ସମ୍ଭାଳି ନେବି; କିନ୍ତୁ ଅନ୍ୟମାନେ ଯଦି ମୋ ସହିତ ହଲପଟା ହୋଇଯାଆନ୍ତି ତେବେ କଥାଟା ନାପସନ୍ଦ ହୋଇଯିବ—ତାଙ୍କର ଏ ମନୋଭାବ ବୁଝିପାରି ରାଧାନାଥ କହିଲେ—"ଆହେ ଏଥିପାଇଁ ଚିନ୍ତା କରନି । ଆମେ ସମସ୍ତେ ଛଦ୍ମବେଶରେ ଯିବା । ଆମକୁ କେହି ଚିହ୍ନି ପାରିବେନି । ଆମେ ତ ପୁଷ୍ପକ ରକେଟରେ ଯିବା । ତାକୁ ଲୁଚେଇ ରଖି ଉତ୍ସବ ଥାନକୁ ଯିବା, ସବୁ ଦେଖିବା ଶୁଣିବା ।

ତାହାକୁ ସମାଲୋଚନା କରିବା ନାହିଁ । ଯଦି ଆମକୁ କେହି କିଛି କହିବାକୁ ଡାକିବ ତେବେ ଆମେ ସାପ ମରିବନି କି ବାଡ଼ି ଭାଙ୍ଗିବନି ଭଲଆ ଓ ସ୍ୱରପଦ କହିଦେଇ ଚାଲି ଆସିବା । ଲୋକଙ୍କ ସବୁକଥାରେ ହୋଇ ହୋଇ ମାରି ଦେବା । ଆମର କେହି କିଛି କରିବେନି । ଚାଲନ୍ତୁ ଯିବା, ମର୍ତ୍ତ୍ୟପୁର ଦର୍ଶନଟା ବି ହୋଇଯିବ । ଇନ୍ଦ୍ରଙ୍କ ସଭାରେ ବସି ବସି ରମ୍ଭା ଉର୍ବଶୀଙ୍କ ନାଚ ଦେଖି ମନ ଚଟା ଧରିଲାଣି । ମର୍ତ୍ତ୍ୟରେ ଟିକିଏ ଶ୍ରୀରାମଚନ୍ଦ୍ର ଭବନରେ ସଭା ଆଉ ସଯୁକ୍ତା ପାଣିଗ୍ରାହୀଙ୍କ ଓଡ଼ିଶୀ ନାଚ ଦେଖି ଆସିଲେ ମନର ପରିବର୍ତ୍ତନ ହୋଇଯିବ ।” ପାଣିଏ ଏଥିରେ ରାଜି ହୋଇଗଲେ । ଠିକଣା ସମୟରେ ସମସ୍ତେ ଛଦ୍ମବେଶ ଧରି ପୁଷ୍ପକ ରକେଟରେ ବସିଲେ । ମାହାଙ୍ଗା ଉପର ଦେଇ ଉଡ଼ିଲାବେଳେ ରକେଟ ଲୁଚାଇବାକୁ କେଉଁଠି ହେଲେ ଜଙ୍ଗଲ ଦେଖିଲେ ନାହିଁ । ମୂର୍ଖ ଲକ୍ଷ୍ମୀଛଡ଼ା ଲୋକଗୁଡ଼ାକ ଜଙ୍ଗଲ ପଦାକରି ଦେଇଛନ୍ତି । ରାଜ୍ୟ ପାଇଁ ଘୋର ଜଙ୍ଗଲର ଯେ ସୁବିଧା କେତେ ବେଶି ତାହା ମୂର୍ଖ ଓ ଛତରଗୁଡ଼ାକ ବୁଝିପାରିଲେ ନାହିଁ । ଜଙ୍ଗଲ ଲୁଟି ଯେ ଆତ୍ମହତ୍ୟା ସଙ୍ଗେ ସମାନ ତାହା ସେମାନଙ୍କ ଗୋବା ମୁଣ୍ଡରେ ପଶିଲା ନାହିଁ ।

ଏହିପରି ଭାବି ରାତି ଅଧରେ ମାହାଙ୍ଗାର ଗୋଟାଏ ନିଛାଟିଆ ଅଞ୍ଚଳରେ ଓହ୍ଲାଇଲେ ଆଉ ରକେଟକୁ ଫେରାଇ ଦେଇ କହିଲେ ଯେ ସ୍ମରଣ କରିବା ମାତ୍ରେ ରକେଟ ଆସି ସେମାନଙ୍କୁ ନେଇଯିବ । ଭୋର ହେଲାରୁ ନିତ୍ୟକର୍ମ ସମସ୍ତେ ସାରିଦେଇ ସଭା ଆଡ଼କୁ ବାହାରି ପଡ଼ିଲେ । ସେ ସନ ଦୁଇ ଦୁଇଟା ଜୟନ୍ତୀ ହେଉଥିବା ଶୁଣି ସମସ୍ତେ ଖୁସି ହେଲେ । ଲୋକଙ୍କ ଠାରୁ ବୁଝିଲେ ଯେ ମିଆଁଙ୍କ ଆୟୋଜିତ ଜୟନ୍ତୀଟା ମାତବରିଆ ହେବ । ସେହି ସଭାଆଡ଼େ ସମସ୍ତେ ଚାଲିଲେ । ସଭା କାମ ଖୁବ୍ ଜାକଜମକରେ ଚାଲିଥାଏ । ସଭାର ଜଣେ ଲୋକକୁ ଗଙ୍ଗାଧର ପଚାରିଲେ—ହଇହେ, ପ୍ରତିବର୍ଷ ଏତିକି ଲୋକ ହୁଅନ୍ତି ? ଲୋକଟା କହିଲା, “ଉଁ ହୁଁ ଆଗେ ଆହୁରି ବେଶି ଲୋକ ହେଉଥିଲେ । ଏବର୍ଷ ମିଆଁ ସରକାରଙ୍କ କେତେକ ଗଫଲତି ପଦାରେ ପକାଇ ଦେବାରୁ ସରକାର ରାଗିଯାଇ ସବୁ ବ୍ୟବସାୟୀ, କଣ୍ଟ୍ରାକ୍ଟର, ସରକାରୀ ଲୋକ ଏପରିକି ମନ୍ତ୍ରୀମାନଙ୍କୁ ବି ସଭାରେ ଯୋଗ ନ ଦେବାକୁ କଡ଼ାକଡ଼ି ତାଗିଦ କରିଦେଇଛନ୍ତି । ବହୁ ଲୋକ ଭୟକରି ସଭାକୁ ଆସି ନାହାନ୍ତି । ସରକାରୀ ଦଳ ଆଉ ଗୋଟାଏ ଥାନରେ ଜୟନ୍ତୀ କରୁଛନ୍ତି ।

ସଭାରେ ସମସ୍ତେ ପାଣିଙ୍କ ଗୀତାଭିନୟ, ଇସ୍ପାତମୁହାଁ ସାହିତ୍ୟିକମାନଙ୍କ ବକ୍ତୃତା ଶୁଣିଲେ । ଲୋକଙ୍କ ଉତ୍ସାହ ଓ ଉଦ୍ଦୀପନା ଦେଖି ନନ୍ଦକିଶୋର ପାଣିଙ୍କୁ କହିଲେ—ଓଃ, ଲୋକେ ଆପଣଙ୍କୁ କେତେ ଭଲପାଆନ୍ତି ସତେ ! ସେଠା ଜୟନ୍ତୀ

ଦେଖିସାରି ସମସ୍ତେ ସରକାରୀ ଜୟନ୍ତୀ ଦେଖିବାକୁ ଗଲେ । ସେଠା ସଜାସଜ, ଫୁଲହାରର ପ୍ରାଚୁର୍ଯ୍ୟ, ମଟରକାର ଓ ବସ୍‌ର ଭିଡ଼ ଦେଖି ସମସ୍ତେ ଭାବିଲେ—ସରକାର ନିଶ୍ଚିତ ଭାବରେ ପାଣିଙ୍କ ପ୍ରକୃତ-ପୂଜକ ହୋଇଯାଇଛନ୍ତି । ରାଧାନାଥ କହିଲେ ମାଗଣାରେ କଅଣ ଭଗବାନ ଗୀତାରେ ଲେଖିଛନ୍ତି—ବଡ଼ ଲୋକେ ଯାହା ଆଚରଣ କରିବେ ଲୋକେ ନିଶ୍ଚୟ ତାକୁ ଅନୁସରଣ କରିବେ ? ଏଠା ଜୟନ୍ତୀ ଦେଖିଲେ ଲୋକେ ଆସନ୍ତା ସନମାନଙ୍କରେ ଅଧିକ ଆଡ଼ମ୍ବରରେ ଜୟନ୍ତୀ ପାଳିବେ । ପାଣିଙ୍କୁ ସମସ୍ତେ ବଧେଇ ଦେଇ କହିଲେ—ଆପଣ ଆମ୍ଭମାନଙ୍କଠାରୁ ଅଧିକ ଭାଗ୍ୟବାନ । ଆମେ କେବଳ କଲେଜମାନଙ୍କର ଓଡ଼ିଆ ଶ୍ରେଣୀ ଭିତରେ କଏଦୀ ପରି ରହିଛୁ । ବାହାର ଦୁନିଆ ଆମକୁ ଦେଖୁ ନାହାନ୍ତି କି ଆମେ ତାଙ୍କୁ ଦେଖୁନୁ । ଆପଣ କିନ୍ତୁ ସମ୍ପୂର୍ଣ୍ଣ ମୁକ୍ତ । ଜନସାଧାରଣ ଆପଣଙ୍କୁ ଦେଖୁଛନ୍ତି, ଆପଣଙ୍କୁ ଭଲ ପାଉଛନ୍ତି, ଆପଣଙ୍କୁ ଦେଖି ନିଜକୁ ଭୁଲିଯାଆନ୍ତି । ସମସ୍ତଙ୍କର ଆପଣ କେଡ଼େ ପ୍ରିୟ ସତେ !

ଆଖି ଛଳ ଛଳ କରି ବୈଷ୍ଣବ ପାଣି କହିଲେ—ହଁ, ଜନସାଧାରଣଙ୍କ କଥା ଯାହା କହିଲେ ତାହା ସତ; କିନ୍ତୁ ସରକାରୀ ଲୋକେ ଏଠି ଯେଉଁ ହଟଚମଟ ଦେଖାଉଛନ୍ତି ତାହାର ଶତାଂଶ ଯଦି ମୁଁ ମର୍ତ୍ତ୍ୟରେ ଥିଲାବେଳେ ମୋ ପାଇଁ ଦେଖାଇ-ଥାଆନ୍ତେ ତେବେ ମୁଁ ଆଉ କିଛିଦିନ ମର୍ତ୍ତ୍ୟରେ ଆରାମରେ ରହିପାରି ଥାଆନ୍ତି । ଛାଡ଼ନ୍ତୁ ସେକଥା, ଗଲା କଥା ସୁମରି ଲାଭ ନାହିଁ । ଏବେ ସରକାରୀ ଲୋକେ କେମିତି ଦରଦ ଦେଖାଇବେ ତାହା ଦେଖାଯିବ । ସମସ୍ତେ ଯାଇ ସଭାରେ କଡ଼ପଟିଆ ହୋଇ ଗୋଟିଏ ଜାଗାରେ ବସିଲେ । ଫୁଲମାଳ ଓ ଝୁରି ଫୁଲର ପରିମାଣରୁ ଜଣାପଡ଼ୁଥିଲା ସତେକି ଯେପରି ଫୁଲଡାକୁମାନେ ଫୁଲ ବଗିଚାରେ କଳାକନା ବୁଲେଇ ଦେଇ ସବୁ ଲୁଟିନେଇ ଆସିଛନ୍ତି, ତେଣେ ରାଜଧାନୀ ଝାଡ଼ଝୁଡ଼ । ସବୁଯାକ ମନ୍ତ୍ରୀ ଆସି ଦୋଳ ମେଲଣରେ ବିମାନ ସବୁ ଥୁଆ ହେଲାପରି ମଞ୍ଚ ଉପରେ ଥୁଆ ହୋଇଥାଆନ୍ତି । ମନ୍ତ୍ରୀମାନଙ୍କ ପାଖକୁ ଲାଗି ଆଉ କେତେଜଣ ବସି ମନ୍ତ୍ରୀଙ୍କ ସହ ପ୍ରେମରେ ଆଉଟୁ ପାଉଟୁ ହୋଇ-ଯାଉଥାଆନ୍ତି । ନନ୍ଦକିଶୋର ସେମାନଙ୍କୁ ଚିହ୍ନିବା ପାଇଁ ନିରେଖି କରି ଚାହିଁଲେ । ଆବାକାବା ହୋଇଯାଇ ରାଧାନାଥଙ୍କ କାନରେ ଫୁସ୍‌ଫୁସ୍ କରି କହିଲେ—ଆଜ୍ଞା ଦେଖିଲେଣି ନା, ମନ୍ତ୍ରୀଙ୍କ ଗହଣରେ ଯିଏ ବାଆଁ କଡ଼େ ବସିଛି ସେଇଟା ଗୋଟାଏ କାଠଚୋର । ହେ ଭଗବାନ ! ଡାହାଣ କଡ଼ରେ ଯିଏ ବସିଛି ସେ ଗୋଟାଏ ସ୍ମଗ୍‌ଲ ଚୋର, ତା ଡାହାଣକୁ ବସିଛି ଜଣେ ଡକେଇତ । ଏ ପାଖେ ଫୁଲମାଳ ପକେଇ ଛାତି ଫୁଲେଇ ବସିଛନ୍ତି, ନରହତ୍ୟାକାରୀ, କୁଖ୍ୟାତ କଳାବଜାରୀ, ଅପମିଶ୍ରଣ-

ଘରପୋଡ଼ିଆ ଓ ନାସ୍ତିଧର୍ଷକଗଣ । ଗଙ୍ଗାଧର କହିଲେ—ଓହୋ ! ଏମାନଙ୍କୁ ପାଣି-ସାହିତ୍ୟର ଭଲବ କେଡ଼େ ଜୋର୍‌ରେ ନ ଦେଖେଇଛି !

ଏହି ଉଲବଗ୍ରସ୍ତ ବ୍ୟକ୍ତିମାନେ ପାଣି ସାହିତ୍ୟର ଫାଇଦା ନ ମାଡ଼ି ଗାଳିଗୁଲଜ ସାହିତ୍ୟର ବେଶ୍ ଆଲୋଚନା କଲେ । ମିଆଁଙ୍କ ଜୟନ୍ତୀଉତ୍ସବରେ କିଏ କେଉଁଠି ପାଡ଼ିଲା, କିଏ ଚୁଙ୍କିଲା ତାର ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ । ମିଆଁ ଦଳର କାରପଟଦାର-ମାନଙ୍କୁ ନିପାତ କରିବା ପାଇଁ ସେମାନଙ୍କର ଯେ ଯଥେଷ୍ଟ ଶକ୍ତି ଅଛି ତାହା ଭଲଭାବରେ ସୂଚାଇ ଦେଲେ । କେତେକ ବକ୍ତା ଶକ୍ତି ପରୀକ୍ଷା ପାଇଁ ଖୋଲା ମୈଦାନ ଉପରକୁ ବାହାରି ଆସିବାକୁ ମିଆଁ ଦଳକୁ ଆହ୍ୱାନ ଦେଲେ । ଆଉ କେତେକ ଆହୁରି ଆଗେଇଯାଇ ମିଆଁ ଦଳଙ୍କ ଘରେ ପଶି ଛେଚି ଦେବାକୁ ସଜବାଜ ହୋଇପଡ଼ିଲେ ।

ନନ୍ଦକିଶୋର କାଳୀଚରଣଙ୍କ କାନରେ କହିଲେ—ଆହେ, ଏଇଟା ବୈଷ୍ଣବ ପାଣିଙ୍କ ଜୟନ୍ତୀ ନୁହେଁ । ଆମେ ସମସ୍ତେ ଭୁଲରେ ଏଠାକୁ ଚାଲି ଆସିଲେ । ସେ ବଦମାସ ଲୋକଟା ଆମକୁ ହଲପଟା କରିବାକୁ ଭୁଲ ଖବର ଦେଇ ଇଆଡ଼େ ପଠେଇଦେଲା । ପାଣିଙ୍କ ଜୟନ୍ତୀ ହୋଇଥିଲେ ପାଣିଙ୍କ ବିଷୟରେ କିଛି କୁହାଯାଇଥାନ୍ତା, ତାଙ୍କ ନାଆଁ ସୁଦ୍ଧା କେହି ଧରୁନାହାନ୍ତି । ଚାଲ ଏଠୁ ପଳେଇବା—

ଏତିକିବେଳେ ଜଣେ ମନ୍ତ୍ରୀ ଉଠିଲେ । ତାଙ୍କ ପାଟିରୁ ପାଣିଙ୍କ ନାଆଁ ଥରେ ଶୁଭିପଡ଼ିଲା । ସମସ୍ତେ ସ୍ଥିରହୋଇ ବସିଗଲେ । ସେ କହିଲେ, "ପାଣିଜୟନ୍ତୀ ମିଆଁ-ଦଳଙ୍କ ପ୍ରକୃତ ଲକ୍ଷ୍ୟ ନୁହେଁ । ଏ ଥାନରେ ଆମର ଟାଣୁଆ ଶକ୍ତି ଦେଖି ସେମାନଙ୍କର ପିଳେହି ପାଣି ହୋଇଗଲାଣି । ଆମର ମେଣ୍ଟକୁ ଭାଙ୍ଗିଦେଇ ଆମର ଭୋଟତକ ମାରିନେବା ସେମାନଙ୍କର ପ୍ରକୃତ ଉଦ୍ଦେଶ୍ୟ । ଆପଣମାନେ ହୁସିଆର ଥାଆନ୍ତୁ । ସେ ଦଗାବାଜଙ୍କୁ ବିଲ୍‌କୁଲ ଭୋଟ ଦେବେନି । ସେମାନେ ଆସି ପାକଳାପାକଳି କରିପାରନ୍ତି । ସେମାନଙ୍କୁ ହଁ ତୁମକୁ ଭୋଟଦେବୁ ବୋଲି ମୁହଁରେ କହିଦେବ; କିନ୍ତୁ ଭୋଟ ଦେଲାବେଳେ ଚୁପ୍‌ଚାପ ଆମକୁ ଭୋଟ ଦେଇଦେବ । ସେ ଦଗଲବାଜଗୁଡ଼ାକ ସବୁଆଡ଼େ ବୁଲି କହୁଛନ୍ତି ଆମେ ଦୁର୍ନୀତି କରୁଛୁ, ନିଜର ପାଣ୍ଠି ବଢ଼ାଉଛୁ, ସରକାରୀ କର୍ମଚାରୀ-ମାନଙ୍କୁ ହଠାତ୍ ବଦଳି କରି ସେ ବଦଳିକୁ ଶୁଣି ରଦ୍ଦ କରିବା ପାଇଁ ଦଶ ହଜାର ପନ୍ଦର ହଜାର ଟଙ୍କା ଆଦାୟ କରୁଛୁ । ଆମେ କୁଆଡ଼େ ପ୍ରିୟାପ୍ରୀତି କରୁଛୁ । କାହା ପ୍ରିୟା ପ୍ରତି କାହାର ପ୍ରୀତି ନାହିଁ ? ଆମେ ଅଧିକାଟା କଅଣ କରି ପକେଇଲୁ ଯେ । ଟଙ୍କା ସଂଗ୍ରହ ନ କଲେ ଦଳ ଚଳିବ କିପରି ? ଏ ସବୁ ପାଇଁ ଆମେ ଲକ୍ଷେ ଟଙ୍କା ଦେଲୁ । ଆମେ କେଉଁଠୁ ଆଣି ଏ ଟଙ୍କା ଦେଇଥାନ୍ତୁ । ସର୍ବସାଧାରଣଙ୍କଠାରୁ ସଂଗୃହୀତ ଧନ

ସର୍ବସାଧାରଣଙ୍କ ପାଇଁ ଖର୍ଚ୍ଚ ହେଉଛି । ଏଥିରେ ଦୋଷ ରହିଲା କେଉଁଠି ? ଯିଏ ଆଦାୟ କଲା ସେ ତାର କମିଶନ ନିଅନ୍ତା ନାହିଁ କି ? ସରକାରୀ କର୍ମଚାରୀମାନେ ଲୋକଙ୍କଠାରୁ ଟିକସ ଆଦାୟ କରୁଛନ୍ତି । ସେଥିରୁ ସେମାନେ ପୁଣି ଦରମା ନେଉଛନ୍ତି ତ ? ଆମେ ଚାନ୍ଦାରୁ କିଛି କମିଶନ ନେଲେ ଖରାପ ହେଲା କଅଣ ? ସେମାନଙ୍କର ଟଙ୍କା ଦରକାର ଥିଲା ତ ଚାନ୍ଦା ଆଦାୟ କରିଥାନ୍ତେ, କମିଶନ ନେଇଥାନ୍ତେ । ଆମେ କଅଣ ମନା କରୁଥିଲୁ ? ତା ନ କରି ଗୋଟାଏ ହଲ୍ଲା ସୃଷ୍ଟି କଲେ । ପାଣିଙ୍କୁ ଲୋକେ ଭଲ ପାଆନ୍ତି ବୋଲି ତାଙ୍କର ଜୟନ୍ତୀ କରି ଲୋକଙ୍କୁ ନିଜ ଆଡ଼କୁ ଟାଣିନେବାର ଏକ ଫନ୍ଦି କରିଛନ୍ତି । ଏହିବାଟେ ଆମ ଭୋଟତକ ମାରିନେବାକୁ ବସିଛନ୍ତି । ଆମକୁ ଗାଳିଦିଅ, ମାର, ଆମ ନାଆଁରେ ଦୁର୍ନାମ ରଟ ଆମେ କିଛି କହିବୁ ନାହିଁ; କିନ୍ତୁ ଆମ ଭୋଟରେ ହାତ ଦେଲେ ଆମେ ସୃଷ୍ଟି ପ୍ରଳୟ କରିଦେବୁ ।

ମିଆଁ ଦଳର କେତେକ ଲୋକ ସେ ସଭାରେ ଥିଲେ । ସେମାନେ ଗୁଡ଼େଇ ଗୁଡ଼େଇ ପ୍ରଶ୍ନ ପଚାରି ମନ୍ତ୍ରୀଙ୍କୁ ହଇରାଣ କଲେ । ମନ୍ତ୍ରୀ ବାଧ୍ୟ ହୋଇ ଜଣେ କାରପଟଦାରଙ୍କୁ ସଭାରେ ହୋମିଓପାଥି ଔଷଧ ପ୍ରୟୋଗ କରିବାକୁ ଇଙ୍ଗିତ ଦେଲେ । ସେ ତତ୍‌କ୍ଷଣାତ ଲୋକଙ୍କ ଭିତରେ ପଶି ଦି ଚାରିଟା ଢେଲା ମଞ୍ଚ ଉପରକୁ ଛାଡ଼ିଦେଲା । ମିଆଁ ଦଳ ଢେଲା ପକେଇଲେ ବୋଲି ଚାରିଆଡ଼େ ଧ୍ୱନି ଉଠିଲା । ମନ୍ତ୍ରୀଙ୍କ ଆଦେଶରେ ପୁଲିସବାଲା ଏ ମିଆଁ ଦଳର ଭେଣ୍ଡିଆଙ୍କୁ ଠେଙ୍ଗାରେ ଟାଙ୍କେ ଟାଙ୍କେ ଛେଚି ଦେଲେ । ମନ୍ତ୍ରୀଙ୍କ ଦଳର ବି ଜଣେ ଦିଜଣ ଠେଙ୍ଗାମାଡ଼ ଖାଇଗଲେ । ବୈଷ୍ଣବପାଣିଙ୍କ ଅଣ୍ଟାରେ, ରାଧାନାଥଙ୍କ ମୁଣ୍ଡରେ, ନନ୍ଦକିଶୋରଙ୍କ ଗୋଡ଼ରେ ଓ କାଳୀଚରଣଙ୍କ ହାତରେ ଠେଙ୍ଗାମାଡ଼ ବସିଗଲା । ସେମାନେ ପଳେଇଗଲାବେଳେ ବୈଷ୍ଣବ ପାଣି କହୁଥିବାର ଶୁଣାଗଲା—ଓହୋ କ୍ଷମତା ହାତରେ ପଡ଼ିଲେ ଲୋକେ କଣ ନ କରନ୍ତି ! ଅପଦାର୍ଥ-ଗୁଡ଼ାକ ସାହିତ୍ୟରେ ବି ରାଜନୀତି ପୂରେଇ ଦେଲେ । ରାଧାନାଥ କହିଲେ, ଶ୍ରୀରାମ ଭବନ ଆଉ ଯିବା ନାହିଁ, ଚାଲ ରକେଟରେ ପଳେଇବା ।

—*—

# ଦାନ୍ତ ସାହିତ୍ୟର ପୋଲୁହ

ସହରର ପ୍ରଧାନ ରାସ୍ତାରେ ଗଲେ ସବୁଠାରୁ ବେଶି ଦୃଷ୍ଟି ଆକର୍ଷଣ କରେ ଯୋଡ଼ାଏ ଦାନ୍ତ ଡାକ୍ତରଙ୍କ ଡାକ୍ତରଖାନା । ଗୋଟିଏ ହେଲା ଡାକ୍ତର ଦନ୍ତାବଳି ଦାସଙ୍କ ପରିଚାଳିତ 'ଦନ୍ତଶ୍ରୀ' ଆଉ ଡାକ୍ତର ସୁଦନ୍ତ ରାଓଙ୍କ ପରିଚାଳିତ 'ଦନ୍ତଭୂଷଣ' । ଦୁଇଟିଯାକ ଡାକ୍ତରଖାନା ପାଖାପାଖି । ଦୁହିଁଙ୍କ ମଝିରେ ସାଇନବୋର୍ଡ଼ ନ ଥିବା ଗୋଟାଏ ଫାଲ୍‌ତୁ ଦୋକାନ । 'ଦନ୍ତଶ୍ରୀ'ର ସାଇନ୍‌ବୋର୍ଡ଼ରେ ବତିଶିଟିଯାକ ଦାନ୍ତ ଦେଖେଇଥିବା ଗୋଟିଏ ବଡ଼ ମଣିଷମୁଣ୍ଡର ଚିତ୍ର । 'ଦନ୍ତଭୂଷଣ' ସାଇନ୍‌ବୋର୍ଡ଼ରେ ସୁନ୍ଦର ସୁନ୍ଦର ଦାନ୍ତ ଦେଖେଇ ହସୁଥିବା ଏକ ତରୁଣୀ ମୁହଁର ଚିତ୍ର । ହସରୁ ସତେ ଯେମିତି ମୁକ୍ତା ଝରି ପଡ଼ୁଛି । ଦୁଇଟିଯାକ ସାଇନ୍‌ବୋର୍ଡ଼ ପ୍ରାୟ ସମସ୍ତ ବାଟୋଇଙ୍କ ଦୃଷ୍ଟି ଆକର୍ଷଣ କରେ ।

ଦନ୍ତାବଳି ଦାସ ଆଉ ସୁଦନ୍ତ ରାଓଙ୍କ ଭିତରେ ତୀବ୍ର ପ୍ରତିଯୋଗିତା ଦେଖା ଦେଇଥାଏ । ଦୁଇଜଣଯାକ ନିଜ ନିଜ ଚୌକି ମୁହୂର୍ତ୍ତିକ ପାଇଁ ବି ଛାଡ଼ୁ ନ ଥାନ୍ତି । ବଗ ମୀନକୁ ଛକିଥିଲା ପରି ଦାନ୍ତରୋଗୀଙ୍କୁ ଛକି ରହିଥାନ୍ତି । ଜଣେ କେହି ବାଟୋଇ ଯଦି ଗାଲରେ ହାତ ଦେଇ ସେ ଆଡ଼କୁ ଚାହିଁ ଦେଉଥିଲା ତେବେ ଦୁଇ ଡାକ୍ତର ଓ ତାଙ୍କର ଦୁଇ ଛଡ଼ିଦାରମାନଙ୍କର ପାଟି ଲାଳେଇ ଉଠୁଥିଲା । ଗାଲରେ ହାତ ଦେବାଟା ଦନ୍ତଶୂଳର ନିର୍ଭୁଲ ଲକ୍ଷଣ ବୋଲି ସେମାନଙ୍କୁ ଜଣାଯାଉଥିଲା । ଡାକ୍ତରଖାନା ପାଖରେ ଠିଆ ହୋଇ ଗାଲରେ ହାତ ଦେଇଥିବା ଲୋକଟି ଯଦି ସାଇନ୍‌ବୋର୍ଡ଼କୁ ଚାହିଁ ଦେଉଥିଲା ତେବେ ସେହି ଡାକ୍ତରଙ୍କର ଛଡ଼ିଦାର ସଙ୍ଗେ ସଙ୍ଗେ ସାଦର ନିମନ୍ତ୍ରଣ ଜଣାଇ କହନ୍ତି—"ଆଜ୍ଞା ଆସନ୍ତୁ ଆସନ୍ତୁ । ଡାକ୍ତରବାବୁ ଅଛନ୍ତି । ଆହା, କେତେ ଦାନ୍ତ କଷ୍ଟ ଭୋଗିଲେଣି ! ଏ କଷ୍ଟକୁ ଡାକ୍ତରବାବୁ ଆଖିପିଛୁଳାକେ ଭଲ କରିଦେବେ । ଆସନ୍ତୁ, ଆସନ୍ତୁ ।" ବେଳେବେଳେ ଶରଟା ବାଜିଯାଏ । ଅଧିକାଂଶ ସମୟ କିନ୍ତୁ ଶରଟା ଧାଇଁ ବାଇଁ ଉଡ଼ିଯାଏ । ବାଟୋଇ ଆଖି ତମା ତମା କରି କହିଉଠେ—"କି ଦାନ୍ତ ହୋ, କି କଷ୍ଟ, କାହାର ହେଉଛି ତୁମର ?" ଅପ୍ରସ୍ତୁତ ଛଡ଼ିଦାରଟି ଲଜ୍ଜିତ ହୋଇ କ୍ଷମା ମାଗିନିଏ । ଡାକ୍ତର ଦୁହେଁ ନିହାତି ଅସମ୍ଭାଳ ନ ହେଲେ ଚୌକିରୁ ଉଠନ୍ତି ନାହିଁ କି ପାଇଖାନା ଯାଆନ୍ତି ନାହିଁ । ଏତିକି ଅନୁପସ୍ଥିତି ବେଳେ ରୋଗୀ ଅନ୍ୟ ଡାକ୍ତର ପାଖକୁ ଚାଲିଯିବ । ଏଇଟା ଅସହ୍ୟ । ଏମିତି ଛକାଛକି ଲାଗି ରହିଥାଏ ।

ଢନେ ଡାକ୍ତର ଦନ୍ତାବଳ ଦାସଙ୍କୁ ଅସମ୍ଭାଳ ଦୂର ଦେଖେଇଲା । ସେତେବେଳକୁ ଡାକ୍ତରଖାନାରେ ବନ୍ଧନ ହୋଇ ନଥାଏ । ସେ ସମୟଟା ପୁଣି ରୋଗୀ ଯୁଟିବା ସମୟ । ଆଉ ଅପେକ୍ଷା କରି ହେବନି । ନସାକୁ ସାଇକେଲ୍‌ରେ ବାହାରିଲାବେଳେ ଛଡ଼ିଦାରକୁ ତରତରରେ କହିଦେଇ ଗଲେ—"ଦେଖ, ରୋଗୀଟାଏ ଆସିଲେ ତା ସହିତ ଖୁସିଗପ କରି ତା ମନ ମଜାଇ କୌଣସି ମତେ ଅଧଘଣ୍ଟାଏ ଆମ ଡାକ୍ତରଖାନା ଭିତରେ ବସାଇ ରଖିବ । ମୁଁ ଅଧଘଣ୍ଟାକ ଭିତରେ ଫେରି ଆସୁଛି । ଦେଖ ଯେ ଯେପରି 'ଦନ୍ତଭୂଷଣ' ଆଡ଼େ ନଜର ନ ପକାଏ । ଆମ ପଇସା ଯେପରି ସୁଦନ୍ତ ବାଓ ପେଟରେ ନ ପଡ଼େ । ମୁଁ ଚାଲିଲି । ଜାଗ୍ରତ ଥିବୁ ।"

ଡାକ୍ତର ଦନ୍ତାବଳ ଦାସଙ୍କ ଯିବାର ଦଶବାର ମିନିଟ୍ ପରେ ମୁଣ୍ଡରେ ତଳ ଉପର କରି ଗୁଦରଟା ଭିଡ଼ି ଗୋଟାଏ ଲୋକ ଆସି 'ଦନ୍ତଶ୍ରୀ' ଭିତରେ ପଶିଲା ଆଉ ଡାକ୍ତର ଦନ୍ତାବଳ ଦାସ କେତେବେଳେ ଆସିବେବୋଲି ପଚାରିଲା । ଗୁଡ଼ିଆ ହୋଇଥିବା ଗୁଦର ଉପରେ ପାପୁଲିଟାକୁ ମାଡ଼ିରଖି ଆର୍ତ୍ତଧ୍ୱନି ଦେଉଥାଏ । "ଓ-ହୋ ହୋ-ହୋ ମରିଗଲି । ଇ ହି ହି ହି ଜୀବନ ଗଲା ଗଲା । କୁଆଡ଼େ ଯାଇଛନ୍ତି ଡାକ୍ତର ବାବୁ ? ଉ ହୁ ହୁ ହୁ କି ହଳାହଳ କରି ପକାଉଛୁ ! ଡାକ୍ତରବାବୁ ଆସିବାକୁ ଆଉ କେତେ ଡେରି ଅଛି ? ଏ ହେ ହେ ହେ ପ୍ରାଣଟା ଗଲା ।" ଛଡ଼ିଦାର ଆନନ୍ଦରେ କୁରୁଳି ଉଠି, ରୋଗୀର ହାତ ଧରିନେଇ ଚୌକିରେ ବସାଇଦେଲା । ତା ଭିତରେ ଥିବା ସବୁ ସହାନୁଭୂତିତକ କାଢ଼ି ପକେଇ ଆରମ୍ଭ କଲା—"ଆ ହା ହା ଆପଣଙ୍କ ଦାନ୍ତଟା ଆପଣଙ୍କୁ ବଡ଼ ହଇରାଣ କରୁଛି ।"

—"ଇ ହୁ ହୁ, ହୁଁ ।"

"ବ୍ୟସ୍ତ ହୁଅନ୍ତୁ ନାହିଁ । ଡାକ୍ତରବାବୁ ଘରେ ଗୋଟାଏ ନୂଆ ଔଷଧ ଛାଡ଼ି ଦେଇ ଆସିଥିଲେ । ଯାଇଛନ୍ତି ସେଇଟା ନେଇ ଆସିବାକୁ । ନ୍ୟୁୟର୍କ ଡେଣ୍ଟାଲ କଲେଜର ପ୍ରିନ୍‌ସିପାଲ ପ୍ରଫେସର ଫର୍ଡିନାଣ୍ଡ ଦନ୍ତରୋଗ ପାଇଁ ଏକ ଅଦ୍ଭୁତ ଔଷଧ ତିଆରି କରିଛନ୍ତି । ତାହା ଯେଉଁଠାରେ ଟହଲ ପକାଇ ଦେଇଛି, ସେଠାରେ ଦାନ୍ତରୋଗ ଏକାବେଳେକେ ମୂଳୋତ୍ପାଟିତ ହେବା ଉପରେ । ଭାରତୀୟ ଦାନ୍ତ ଉପରେ ଏହା କିପରି କାମ କରୁଛି, ତାହା ଜାଣିବା ପାଇଁ ଆମ ଡାକ୍ତରବାବୁଙ୍କ ପାଖକୁ ଛଅଟି ଶିଶି ପଠାଇ ଦେଇଛନ୍ତି । ଘରୁ ଆସିଲାବେଳେ ତରତର ହୋଇ ପଳାଇ ଆସିଲେ । ଔଷଧଟା ଭୁଲରେ ଛାଡ଼ି ଆସିଲେ । ଦଶମିନିଟ୍ ହେଲା ଗଲେଣି । ଆସୁଥିବେ । ମାତ୍ର ମିନିଟିଏ ଦୁଇ ମିନିଟ୍ ଭିତରେ ପହଞ୍ଚିଯିବେ । ହେଇ ପହଞ୍ଚିଲେ ଜାଣ ।"

—"ଉ ହୁ ହୁ ମରିଗଲି ଲୋ । ଆଉ ପାରିବ ନାହିଁ । ଯାଉଛୁ ଦାନ୍ତଟା ସେ ପାଖରେ ଓପାଡ଼ି ପକେଇବି । ଇ ହି ହି !"

ଛଡ଼ିଦାର ଚହଁକି ଉଠି କହିଲା—"ଆଜ୍ଞା, ଆପଣ ଏ କ କଥା କହୁଛନ୍ତି । ମୁଣ୍ଡ ବଥେଇଲେ କେହି କେବେ ମୁଣ୍ଡକୁ ଓପାଡ଼ି ଦେଇଛି ? ଦାନ୍ତ ମୁଣ୍ଡଠାରୁ ଆହୁରି ଗୁରୁତ୍ୱପୂର୍ଣ୍ଣ । ତାହା ବଥେଇଲା ବୋଲି ତାକୁ ଓପାଡ଼ି ଦେବେ ?

—"ଉ ହୁ ହୁ ଆହେ ପୋକରା ଦାନ୍ତର ଫେର ଗୁରୁତ୍ୱ ଅଛି ନା ?"

—"କଅଣ କହିଲେ—ସାହିତ୍ୟରେ ଦାନ୍ତର ସ୍ଥାନ କିଛି କମ୍ ନୁହେଁ । ଦାନ୍ତ ଉପରେ ଯେତେ ପ୍ରବଚନ ଗଢ଼ାଯାଇଛି ଶରୀରର ଅନ୍ୟ କୌଣସି ଅଂଶ ଉପରେ ଏତେ ଗଢ଼ା ହୋଇନି ।'

"ଏଁ ! ଦାନ୍ତର ଫେର୍ ଗୋଟାଏ ସାହିତ୍ୟ ? ତା ଉପରେ ପୁଣି ପ୍ରବଚନ ? କଅଣ କହୁଛ ? ଓ ହୋଃ, ହୋଃ ପ୍ରାଣ ଗଲାଗଲା । କି କଷ୍ଟ ।"

"ଆହା ! ଆପଣ ଦାନ୍ତ ସାହିତ୍ୟ ବିଷୟରେ କିଛି ଶୁଣି ନାହାନ୍ତି, ସେଇଥି ଲାଗି ଦାନ୍ତଟାକୁ ଓପାଡ଼ି ଦେବାକୁ କହୁଛନ୍ତି ।

ତୁମେ କଅଣ ଶୁଣିଛ ବା ପଢ଼ିଛ କହିଲ ?

"ଆପଣ ଜାଣନ୍ତି ଯେ, ମନେ ପଡ଼ୁ ନ ଥିବ । ତେବେ ଶୁଣନ୍ତୁ । ପ୍ରଥମ ହେଲା 'ଦାନ୍ତ ଦେଖେଇବା ।' ମୃଦୁ ହସ ହସିଲେ କହନ୍ତି ଦାନ୍ତ ଦେଖେଇ ଦେଲା । ପଶୁକ୍ଷେତ୍ରରେ ଅର୍ଥଟା ଓଲଟା । ବିରାଡ଼ି, କୁକୁର, ବାଘ ରାଗିଗଲେ ଦାନ୍ତ ଦେଖାନ୍ତି । ତାର ଅର୍ଥ ହେଲା ପ୍ରତି ଆକ୍ରମଣ ପାଇଁ ସେ ପ୍ରସ୍ତୁତ ହେଉଛି ।"

"ଉ-ହୁ-ହୁ-ହେ ହେଁ ହେଁ ।"

"ପୁଣି ଦେଖନ୍ତୁ 'ଦାନ୍ତ ନେଫେଡ଼ିଲା' ଅର୍ଥାତ୍ ଟିକିଏ ଜୋର୍‌ରେ ହସିଲା । ଆହୁରି ଦେଖନ୍ତୁ 'ଦାନ୍ତ ଭାଙ୍ଗି ଦେବା'—ଅର୍ଥାତ୍ ଜଣକର ଉଦ୍ଧତପଣିଆକୁ ଶାସ୍ତି ଦ୍ୱାରା ଛଡ଼େଇ ଦେବା । ଲୋକେ କହିବାର ଶୁଣିଥିବେ—ତା ଦାନ୍ତ ଭାଙ୍ଗିଦେବି କଅଣ ବୋଲି ପାଇଛି କି !"

"ଫେର୍ ଦେଖନ୍ତୁ 'ଦାନ୍ତ କଡ଼ମଡ଼େଇବା' ଅର୍ଥାତ୍ ଭୟଙ୍କର ରାଗିଯିବା । ଲୋକେ କହନ୍ତି—ଓଃ ରାଗରେ ଦାନ୍ତ କଡ଼ମଡ଼ କରୁଛି ।"

"ଇ-ହି-ହି-ହେଁ ହେଁ ହେଁ ।"

"ଆହୁରି ଦେଖନ୍ତୁ ! 'ଦାନ୍ତେଇବା' ଶିଶୁ ବଡ଼ ହେଲେ କହନ୍ତି ପିଲା ଦାନ୍ତେଇଲାଣି ଅର୍ଥାତ୍ ଦାନ୍ତ ଉଠିଲାଣି । ଅଦ୍ଭୁତ ଗୋଟାଏ ଅର୍ଥ ଅଛି । ଦାନ୍ତରେ କୁଟୁର୍ କୁଟୁର୍ କରି ଛିଣ୍ଡେଇବା । ଉଦାହରଣସ୍ୱରୂପ ବଳଦଟା ପଘାକୁ ଦାନ୍ତେଇ ଦାନ୍ତେଇ ଛିଣ୍ଡେଇ ଦେଲା ।"

"ଇ-ହି-ହି-ହିଁ-ହିଁ-ହିଁ ହିଁ" ।

"ଫେର୍ ଦେଖନ୍ତୁ—'ଦାନ୍ତରେ ସୁନାଖିଲ ଲଗେଇବା' । ଅର୍ଥାତ୍ ଧନୀ ହେବା । ଲୋକେ କହିବା ଶୁଣିଥିବେ—ସେ କଅଣ ଆଉ ଭିକାରି ରମା ଅଛି । ଏବେ ସେ ଦାନ୍ତରେ ସୁନାଖିଲ ବସେଇଲାଣି ।"

"ଇ ହି ହି ଆଉ କଅଣ ?"

"ଆଉ ହେଲା 'ଦାନ୍ତ ନାହିଁ' । ଅର୍ଥାତ୍ ପ୍ରତିରୋଧ କରିବାର ଶକ୍ତି ନାହିଁ । କଥାରେ କହନ୍ତି—ତାର ଦାନ୍ତ ନାହିଁ । ସେଇଥିଲାଗି ଅମୁକ ଢମୁକ ମାଡ଼ ଖାଇଗଲା । ଇଂରେଜୀରେ ଏଇଟାର ବେଶି ପ୍ରଚଳନ । ଯେତେ ଯେପରି ତାର ଦାନ୍ତ ନାହିଁ ।"

"ଓ ହୋ ହୋ ତାପରେ—"

"ତା ପରେ ଦେଖ 'ଦାନ୍ତ ଲଗେଇ ଦେବା' । ଅର୍ଥାତ୍ ମାରିବା, ଆଘାତ କରିବା—ଜଣେ ଜଣେ କହନ୍ତିନ—ମୁଁ ଥିଲେ ତାକୁ ଛାଡ଼ିଥାନ୍ତି ! ତା'ଠି ଦାନ୍ତ ଲଗେଇ ଦେଇଥାନ୍ତି ।"

"ଆ ହା ହା ଆଉ ଅଛି ?"

"ଅଛି, ଅଛି । 'ହାତୀକା ଦାନ୍ତ' । ଟାଣ ଓ ଅଟଳପଣିଆ ବୁଝାଏ । କଥାରେ ଅଛି ମରଦ କା ବାତ୍ 'ହାତୀକା ଦାନ୍ତ' ଅର୍ଥାତ୍ ମରଦର ଜବାବରେ ହାତୀ ଦାନ୍ତ ପରି ଟାଣ ପଣ ଥାଏ ।

"ହି ହୁ ହୁ ହୁ—ଆଉ ଅଛି" ।

ବହୁତ ଅଛି । 'ଦାନ୍ତୁଡ଼ିର ହସ କାନ୍ଦ' । ଦାନ୍ତୁଡ଼ିର ଦାନ୍ତ ପଦାକୁ ବାହାରି ଥାଏ । ତେଣୁ ହସିଲାବେଳେ ଦିଶେ, କାନ୍ଦିଲା ବେଳେ ବି ଦିଶେ । ଏଣୁ ସେ କାନ୍ଦୁଛି

ଣ ହସୁଛୁ ଜଣାପଡ଼େ ନାହିଁ । କୌଣସି ବୟସରେ ଭଲ ପାଗ କ ମନ୍ଦ ପାଗ ହେଉ ଯଦ ଜଣା ନପଡ଼େ, ତେବେ ଲୋକେ ଏହି ପ୍ରବଚନଟିକୁ କହନ୍ତି ।”

“ହେଁ ହେଁ ହେଁ ଉ ହୁ ହୁ ତାପରେ—”

“ଦେଖନ୍ତୁ, ‘ନାରଦର ଚଣା ଚବଣ’ । ଦାନ୍ତ ନଥିବା ଲୋକଙ୍କୁ ନାରଦ କହନ୍ତି । ତା ପକ୍ଷେ ଟାଣ ଚଣା ଚୋବାଇବା ଅତି କଷ୍ଟକର । ଜଣେ ଦୁର୍ବଳ ଯେତେବେଳେ ଅତି ବଳବାନ କାମଟିଏ କରିବାର ଦୁଃସାହସ କରେ, ସେତେବେଳକୁ ଏହି ପ୍ରବଚନଟି ଯୋଖି ଦିଆଯାଏ ?”

“ହେଁ ହେଁ ହେଁ ଆ ହା ହା—ସେଇଠୁଁ କଅଣ” ?

“ସେଇଠୁ ଦେଖନ୍ତୁ ‘ଦାନ୍ତକୁ ଦାନ୍ତ’ । ଏଇଟା ଇଂରେଜୀରେ ବେଶି ଚଳେ । ‘ଟୂଥ୍ ଫର୍ ଏ ଟୂଥ୍’ । ତମେ ମୋର ଗୋଟିଏ ଦାନ୍ତ ଭାଙ୍ଗିଦେଲେ ମୁଁ ତୁମର ଗୋଟିଏ ଦାନ୍ତ ଭାଙ୍ଗି ଦେବି । ଅର୍ଥାତ୍ ଆଘାତର ସମାନ ପ୍ରତିଘାତ ଦେବା ।”

“ଉ ହୁ ହୁ—ବଢ଼ିଆ ସାହିତ୍ୟ ତ ?”

“ହୁଁ—ତାପରେ ଦେଖନ୍ତୁ—‘ଦାନ୍ତ ଠକ ଠକ କରିବା’ ଏଇଟା ପ୍ରଚଣ୍ଡ ଶୀତବେଳେ ବ୍ୟବହୃତ ହୁଏ । କୁହାଯାଏ—ଓଃ ପଦାରେ ମୋ ଦାନ୍ତ ଠକ ଠକ ହୋଇଗଲା ।”

“ଉ ହୁ ହୁ ହୁ”

“ଗଳିତ ଦନ୍ତ’ କଥା ଶୁଣିଥିବ । ଅତି ବୁଢ଼ା ଓ ସାମର୍ଥ୍ୟହୀନ ହୋଇଗଲେ ଜଣେ ଲୋକକୁ ଏହା କୁହାଯାଏ ।”

“ଇ ହି ହି ହି”

“ଆହୁରି ଶୁଣନ୍ତୁ ‘ଜ୍ଞାନଦାନ୍ତ ଉଠିବା’ ଏହାର ଅର୍ଥ ପୂର୍ଣ୍ଣ ଯୌବନ ପାଇବା । ପୂର୍ଣ୍ଣ ଯୌବନବେଳେ ଏ କଳଦାନ୍ତ ଉଠେ ।”

“ଆ ହା ହା ହା”

"ଠିକ୍ ସେମିତି କହନ୍ତି—'ଦୁଧଦାନ୍ତ ପଡ଼ିନ' । ଅର୍ଥାତ୍ ଶୈଶବକୁ ଯାଇନ । ଶିଶୁ ବଢ଼ିଗଲେ ତାର ଦୁଧଦାନ୍ତ ସବୁ ପଡ଼ିଯାଏ । ତା ସ୍ଥାନରେ ନୂଆ ଦାନ୍ତ ଉଠେ ।"

"ଇ ହି ହି ହି"

"ଆହୁରି ଅଛି—'ଦାନ୍ତରେ ତୃଣ ଧରିବା' । ଏହାର ଅର୍ଥ ଜଣକ ପାଖରେ ପୂର୍ଣ୍ଣ ଆତ୍ମସମର୍ପଣ କରିବା । ଗାଈ ବଳଦ ପରି ପଶୁ ପାଟିରେ ତୃଣ ପୂରାନ୍ତି । ଜଣେ ମଣିଷ ପାଖରେ ଆଉ ମଣିଷ ଜଣେ ଦାନ୍ତରେ କୁଟା ଦେଇ ନିଜକୁ ପଶୁ ସ୍ତରକୁ ଖସାଇ ନିଏ ଓ ତାର ବଶ୍ୟତା ସ୍ୱୀକାର କରି ଦୟା ପ୍ରାର୍ଥନା କରେ ।"

"ଏ ହେ ହେ"

"ଆଉ ଅଛି ଗଜଦନ୍ତ ପଲଙ୍କ' । ଏଇଟା ବଡ଼ଲୋକୀ ଓ ସୌଭାଗ୍ୟବାନ୍‌ର ଲକ୍ଷଣ । ବୁଝାଯାଏ—ସେ ଗଜଦନ୍ତ ପଲଙ୍କରେ ଶୋଇବା ଲୋକ ।"

"ଓ ହୋ ହୋ"

"କୃଷୀ ବଳଦ କିଣିଲାବେଳେ ପଚାରେ—'କେତେ ଦାନ୍ତେଇଛି ? ଅର୍ଥାତ୍ ବଳଦର ବୟସ କେତେ ?"

"ଜଣଙ୍କର ହସଟାକୁ ନାପସନ୍ଦ କଲେ ଜଣେ କହିଥାଏ— ଊଃ ! 'ମଲ୍ଲୀଫୁଲିଆ ଦାନ୍ତ' ଦେଖେଇ ଦେଲା । ଆଉ ସୁନ୍ଦରୀ ଝିଅକୁ ଖୋସାମଦ କରିବାକୁ ଡାଲିମ୍ବରଦାନା' 'କୁନ୍ଦଦନ୍ତୀ' ବି କହିଥାନ୍ତି ।

"ହୁଁ ହୁଁ ଉ ହୁ ହୁ"

"ଆହୁରି ଅଛି 'ଦାନ୍ତ ନେଫେଡ଼ିବା' ଅର୍ଥାତ୍ ପରାସ୍ତ ହୋଇଗଲା । ସେହିପରି 'ଦାନ୍ତ ନକୁଟିବା' କହିଲେ ବନସ୍ଥ ଭାବରେ କିଛି ସାହାଯ୍ୟ କରିବାକୁ ବୁଝାଏ ଆଉ 'ଦାନ୍ତ ରଙ୍ଗେଇବା' ଅର୍ଥ ପାନ ଖାଇବା । ଖାଇଥିବା ଲୋକଙ୍କୁ କେହି କେହି ଥଟ୍ଟାରେ କହିଥାନ୍ତି—ଉଁଃ ଦାନ୍ତ ରଙ୍ଗେଇ ଦେଇ ବୁଲିଆସିଲା ।

"ଓ ହୋ ହୋ—'ଦାନ୍ତ ସାହିତ୍ୟ' ତ ଭାରି କଡ଼ା ସାହିତ୍ୟ ଦେଖୁଛି ।"
'ଇ ହି ହି—ମରିଗଲି ଲୋ ।"

"ସୂଚନା ଶୁଣନ୍ତୁ—କଥାରେ ଅଛି 'ଦାନ୍ତ ଦୋହଲେଇବା' ଅର୍ଥାତ୍ ବୃଦ୍ଧତ୍ୱ ପ୍ରାପ୍ତ ହେବା । ସେହିପରି 'ଦାନ୍ତ ଶୁଟେଇବା' ଅର୍ଥ ରାଗର ଉଦ୍ରେକ ହେବା, ଆଉ 'ଦାନ୍ତ ଦୁପାଟିହା ହେଲାଣି' କହିଲେ ବଳ ହରିବଣି ବୋଲି ବୁଝାଏ ।"

ଏତିକିବେଳେ ଡାକ୍ତର ଦୟାନିଧି ଦାସ ତଳପେଟ ସାଫ୍ କରି ପରମାନନ୍ଦରେ ଆସି ପହଞ୍ଚିଲେ । ରୋଗୀ ଦେଖିବା ମାତ୍ରେ ତାଙ୍କ ବ୍ରହ୍ମାନନ୍ଦ ମୁଖ ଘୋଟିଗଲା । ଛଡ଼ିଦାର ଚଟାପଟ୍ ରୋଗୀକୁ ଦାନ୍ତ ଚଉକିରେ ବସେଇ ଦେଲା । ପନ୍ଦର ମିନଟ୍ ଭିତରେ ରୋଗୀର ଦୁଇ ଦାନ୍ତ ବେଦନାକୁ ସଙ୍ଗରେ ନେଇ ମାଡ଼ିରୁ ବାହାରି ପଳେଇଲା ।

ରୋଗୀ ଟଙ୍କା ଦେଇସିବା ପରେ, ଛଡ଼ିଦାର ହସି ହସି କହିଲା—"ଆଜ୍ଞା ଆପଣ ଦଶ ବାରହାତ ଯାଇଥିବେ କି ନାହିଁ, ସେ ଅସିଗଲା । ତାକୁ ମୁଁ ଦାନ୍ତ ସାହିତ୍ୟର ପୋଲିହ ଭିତରେ ଏତେବେଳ ଯାଏ ମାଡ଼ି ବସିଲି । ବାଟଯାକ ଭାରି ଛଟପଟ ହେଉଥିଲା ସେ ପାଖକୁ ପଳାଇବାକୁ । ଆଉ ଡେରି କରିଥିଲେ ପୋଲିହ ଭାଙ୍ଗି ଖସି ପଳେଇଥାଆନ୍ତା ।

ପରମ ସନ୍ତୋଷ ପ୍ରକାଶ କରି ଡାକ୍ତର ବାବୁ ଛଡ଼ିଦାରର ହାତରେ ନୋଟ୍‌ଟିଏ ଗୁଞ୍ଜି ଦେଇ କହିଲେ—"ବହୁତ ବଢ଼ି ଅଟକିଗଲୁଣି, ଯା ସ୍ୱାହା ଜଳଖିଆ ଖାଇ ଦେଇଆ ।"



# ସଟ୍‌କଟିଆ ଉଜ୍‌ପଣ୍ଡା

ମାଇନର ପାଶ୍ କରିବା ପରେ ଉମର ବାପା ଉମକୁ କହିଲେ—"ପାଠତକ ତ ସରିଗଲା, ଏବେ ଲାଗିଯା ଟୋକେଇବୁଣା କାମରେ । ସେଇଟା ଆମ କୁଳ-ବେଉସା । ମୋ ସାଙ୍ଗକୁ ଲାଗିଗଲେ ଆମ ବେବସାଟା ତେଜି ଉଠିବ । ଏତେ ପରିଶ୍ରମ କରି ଏତେବଡ଼ ମାଇନରର ପାଠଟା ଅକାରଣରେ ପଢ଼ିଲୁ ସିନା, ହେଲେ ଟୋକେଇବୁଣାରେ ସେ ପାଠ କଅଣ କରିବ ? କୋଉଠାଏ ବେତ କାଢ଼ିବା ତ ଶିଖେଇଲା ନାହିଁ, ସେଇଟା କି ପାଠ । ଶାଳ ତୋ' କପାଳ ଆଉ ହେଡ଼ଗୁରୁ ହୋଇ ହୋଇବରେ ସଜ ହୋଇଗଲି । ହେଡ଼ଗୁରୁଟା ବି କହିଲା ଯାଉ ପଢ଼ୁ, ମାଇନରଟା ପାଶ୍ କରିଦେଲେ ହାକିମ ହୁକୁମାଙ୍କ ସଙ୍ଗେ ଟକ୍‌କର ଦେଇପାରିବ, ଅଙ୍ଗେଜିରେ ପଦେ ଅଧେ ହାଙ୍କିଦେଇ ପାରିବ । ମୁଁ ବି ଭାବିଲି ସତେ ତ, କିଛି ନହେଲେ ବେଳକୁ ଯେଉଁ ଡାନ୍‌ତରାଟ୍‌ଟା ଆମଠୁଁ ଟୋକେଇ ନଉଛି, ହେ ଇଟିସ୍ ମିଟିସ୍ କହି ଆମକୁ ଭକୁଆ ବନେଇ ଦଉଛି, ତାକୁ ତ ଅନ୍ତତଃ ତୁ ଠୋ ଠୋ ବତେଇଦେବୁ । ମାଇନରୁ ତ ପାଶ୍ ହୋଇଗଲା, ଆଜିକୁ ଟୋକେଇବୁଣାରେ ଲାଗିଯା ।"

ଉମ ବାପାକୁ ବୁଝେଇଦେଲା—"ବାପା ! ପାଠ ଏତିକିରେ ସରିନି, ଆହୁରି ତାଠୁଁ ବଡ଼ା ତାଠୁଁ ବଡ଼ା ପାଠ ଅଛି । ସ୍କୁଲ ଉପରକୁ ଆହୁରି ହାଇସ୍କୁଲ ଅଛି । ତାକୁ ପାଶ୍‌କଲେ ଆହୁରି ବଡ଼ ହାକିମଙ୍କ ସାଙ୍ଗରେ କଥାବାର୍ତ୍ତା କରିବି । ତା' ଉପରକୁ ଆଉ ଗୋଟାଏ କଲେଜ ପାଠ ଅଛି । ତାକୁ ପାଶ୍‌କଲେ ମୁଁ ତ ନିଜେ ହାକିମ ହୋଇଯିବି । ମୋତେ ତ ସରକାରଙ୍କ ତରଫରୁ ସବୁ ମିଳୁଛି । ତମକୁ ତ କିଛି ଦବାକୁ ପଡ଼ୁନି । ତୁମେ ମୋତେ ପାଠ ପଢ଼ିବାକୁ ମନା କରୁଛ କାହିଁ ? ଟୋକେଇବୁଣା ଭଲ ନା ହାକିମ ହବା ଭଲ ?"

ଉମ ବାପା ବିରକ୍ତ ହୋଇ କହିଲା—"ଯା-ଯାଆମ ତୋର ହାକିମ ମୋ ଟୋକେଇବୁଣାର ପାସଙ୍ଗରେ ପଡ଼ିବନି । ଆରେ ସକାଳୁ ପଖାଳ କଂସାଏ ଠିକ୍ ଦେଇ ଟୋକେଇବୁଣାରେ ବସି ଯାଇଥିବ । ପାଟିରେ ପିକାଟାଏ ଲାଗିଥିବ । ବାଉଁଶରୁ ପଟ୍‌ପଟ୍ କୋଉଠି ବେତ ହୋଇଯାଉଥିବ । ସଟାସଟ୍ ଟୋକେଇବୁଣା ଚାଲିଥିବ । ଏ ସୁଖ ଆଗରେ ତୋ' ହାକିମି ସୁଖକୁ ଥୁ । ତୁ'ଟା ନିକମା । ସେ ସୁଖ ଜାଣିବୁ କୁଆଡ଼ୁ । ହଉ ହଁଉ ଯା, ତୁ ପଢ଼, ହାକିମ ହୋ, ହେଲେ ପଛକେ ବୁଝିବୁ ।

× × ×

ଡମ ସବୁ ମନ ଦେଇ ହାଇସ୍କୁଲରେ ପଢ଼ିଲା ଆଉ 'ଡମରୁ' 'ଡମ୍ବରୁ' ବନିଗଲା। ସେଇଠାରେ କି ହନୁଷ୍ଟ ହୁଏ। ସେନ୍ ପାଶ୍ କରି କଲେଜରେ ପଶିଗଲା ଓ ଡମ୍ବରୁଧର ବନିଗଲା। କଲେଜରୁ ଏମ୍. ଏ. ପାଶ୍ କଲାବେଳକୁ ସେ ବାବୁ ଶ୍ରୀ ଡମ୍ବରୁଧର ସାମଲ ବନିଗଲେ।

ବ୍ରହ୍ମାଣ୍ଡ ଅନ୍ଧକାରମୟ ଥିଲା। ଭଗବାନ ଇଚ୍ଛାକଲେ ଆଲୁଅ ହେଉ, ବାସ୍ ସଙ୍ଗେ ସଙ୍ଗେ ଆଲୁଅ ହୋଇଗଲା। ତା'ପରେ କହିଲେ ପୃଥିବୀ ହେଉ। ସାଙ୍ଗେ ସାଙ୍ଗେ ପୃଥିବୀ ହୋଇଗଲା। ସେହିପରି ବାବୁ ଶ୍ରୀ ଡମ୍ବରୁଧର ସାମଲ ଇଚ୍ଛାକଲେ ସେ ଅଧ୍ୟାପକ ହେବେ। ସେ ସଙ୍ଗେ ସଙ୍ଗେ ଅଧ୍ୟାପକ ବନିଗଲେ। ସୃଷ୍ଟି ଓ ସୃଷ୍ଟିକର୍ତ୍ତାଙ୍କ ଭିତରେ ତଫାତ୍ ନାହିଁ କହିଲେ ଚଳେ।

ଥରେ ଲୋଭ ହାତରେ ପଡ଼ିଗଲେ ସେଥିରୁ ନିସ୍ତାର ପାଇବା କାଠିକର ପାଠ। ଡମ୍ବରୁଧର ସାମଲ ଡମ୍ବରୁ ସାର୍ ବନି କେତେଦିନ ଯାଏ ଛାତ୍ରଙ୍କ ଆଗରେ ବକାଟି ବୁଲେଇଲେ। ସେ ଭାବିଥିଲେ ସେଇଟା ବୋଧହୁଏ ଶେଷ ପାହଚ। ତା'ଠୁଁ ବଳି ଆଉ ବଡ଼ପାହଚ ନାହିଁ। କିନ୍ତୁ କିଛିଦିନ ପରେ ସେ ଦେଖିଲେ ଯେ ସାଧା ଲେକ୍ଚରର ପଦଟାରେ ଭଲ ବାସ୍ନା ନାହିଁ। ଡକ୍ଟରେଟ୍‌ର ଭୁରୁଭୁରୁ ବାସ୍ନା ତାଙ୍କୁ ଚୁମ୍ବକ ପରି ଟାଣିଲା। ସେ ଦେଖିଲେ ଯେ ଗେଣ୍ଡାରୁ ଶଙ୍ଖ ପାଲଟିଲା ପରି ଜଣେ ଲେକ୍ଚରର ଯେତେବେଳେ ଡକ୍ଟର ବନିଯାଉଛନ୍ତି ସେତେବେଳେ ପଛରେ ରହିଥିବା ତାଙ୍କ ଗ୍ରୁଢଟା ଆଗକୁ ବାହାରି ପଡ଼ୁଛି। ମୁହଁଟା ପାଚିଆ ପରି ଥିଲେ, ହାଣ୍ଡିପରି ହୋଇଯାଉଛି। ଗଳାଟା କଅଁଳା ବାଛୁରୀ ପରି ଥିଲେ ଗଜମେନ ବୁଲି ହୋଇଯାଉଛି। କଥାବାର୍ତ୍ତାଗୁଡ଼ାକ ଚଢ଼େଇଆ ପରିବର୍ତ୍ତେ ଚାଦୂଅ ହୋଇ ଝଡ଼ୁଛି। ଡମ୍ବରୁଧର ମନେ ମନେ ସ୍ଥିରକରି ନେଲେ ଯେ ନିଶ୍ଚୟ ଡକ୍ କରି ଆସିବେ। ମୁସଲମାନ ଭାଇମାନେ ମକ୍କା ତୀର୍ଥ ବୁଲି ଆସିବାକୁ ହଜ୍ କହନ୍ତି। ସେ ସେମିତି ଗୋଟାଏ ବିଶ୍ୱବିଦ୍ୟାଳୟରେ ଥିବା ଡକ୍ଟରେଟ୍ ଦେଉଳକୁ ଯିବା କାରକୁ ସଂକ୍ଷିପ୍ତ କରି ଡକ୍ ବୋଲି ଧରିନେଲେ। ଅଧ୍ୟାପକମାନେ ଡକ୍ କରି ଆସିଲେ ଡକ୍ଟର ବନିଯିବେ, ଆଉ ତାଙ୍କ ଓଜନଟା ବି ପାଞ୍ଚ ଛଅ କିଲୋ ବଢ଼ିଯିବ। ପହିଲେ କଅଣ କେମିତି କରିବାକୁ ହେବ ସେ ବିଷୟ ଜଣେ ସଙ୍ଗୀଙ୍କୁ ପଚାରିଲେ।

ବନ୍ଧୁଜଣକ କହିଲେ—ଆଜ୍ଞେ, ଡକ୍‌ର ପ୍ରଥମ କଥା ହେଲା ଡକ୍ଟରେଟ୍ ମନ୍ଦିର ଦର୍ଶନ। ଏ ମନ୍ଦିର ବିଶ୍ୱବିଦ୍ୟାଳୟ ଭିତରେ ପାଇବ। ମନ୍ଦିର ବାହାରେ ବହୁତ

ପଣ୍ଡା ଅଛନ୍ତି, ବୁଢ଼ିଆଣୀ ମାଛକୁ ଚକ ବସିଥିଲା ପରି ଏମାନେ ନୂଆ ଡକ୍ ଯାତ୍ରୀଙ୍କୁ ଚକ ବସିଥାନ୍ତି । ଗୋଟାଏ ଆଖି ନିଜ କାମରେ ତ ଆଉ ଗୋଟିଏ ଆଖି ନୂଆ ଡକ୍ ଯାତ୍ରୀଙ୍କ ଉପରେ ଥାଏ । ସେଠି ଯେଉଁ ପଣ୍ଡା ତୁମର ପସନ୍ଦ ହେବ ତାଙ୍କୁ ଧରିବ । ଖବରଦାର, ଦେଖି ଶୁଣି ତାଙ୍କୁ ବାଛିବ । ଭୁଲିକରି ସେମାନଙ୍କୁ ମୂଲେଇବ । ସେମାନେ ତ ବହୁତ ବଡ଼ ବଡ଼ କଥା କହିବେ । ସେ କଥାରେ ମୋଟେ ଭୁଲିଯିବ ନାହିଁ । ସମସ୍ତଙ୍କ କଥାକୁ ଓଜନ କରିବ । ଯାହାର କଥାରେ ମନ ମାନିବ, ତାକୁଇ ପଣ୍ଡା କରିବ । ଜଣକୁ ଧରି ପକେଇଲେ ଅନ୍ୟମାନେ ଗୁଞ୍ଜିପଲେଇବେ । ସେମାନେ ହୁଏତ ତୁମକୁ ଦୂରରେ ଥାଇ ଟାହିଟାପରା କରିପାରନ୍ତି । ଗୋଟିଏ ବୁଢ଼ିଆଣୀ ମାଛଟାଏ ଖାପୁକରି ଧରି ପକାଇଲେ ଅନ୍ୟ ବୁଢ଼ିଆଣୀମାନେ ଦୂରରେ ରହି ଗୋଡ଼ ହାତ ହଲେଇ ନିଜର ହତାଶା ଓ ଈର୍ଷା ପ୍ରକଟ କରନ୍ତି । ସେ ଦେଉଳର ପଣ୍ଡାମାନେ ସେମିତି ଦୂରରେ ଥାଇ ନିଜର ଈର୍ଷାଭାବ ପ୍ରକଟ କରିପାରନ୍ତି । ସେଥିକୁ କାନ କି ଆଖି ଦେବନି ।

ତେବେହିଁ ତୁମ ପଣ୍ଡା ତୁମକୁ ଆଗ ନିଜ ଘରକୁ ନେଇଯିବେ । ତୁମେ କେଉଁ ମନ୍ତ୍ରର ସାଧନା କରିବ; ତାଙ୍କୁ ସେମିତି ସନ୍ତୁଷ୍ଟ କଲେ ସେ ଦିଅଁ ଦର୍ଶନ କରେଇ ଦେବେ ଆଉ କେଉଁ ଦିନରେ ସେ ବରପାଇବେ ତାହା ବତେଇଦେବେ । ତା'ପରେ ତୁମକୁ ଧରେ ନେଇ ସେ ଦେଉଳ ଅଫିସରେ ତୁମର କାଗଜପତ୍ର ଓ ଟଙ୍କାପଇସା ଦାଖଲ କରିଦେବେ । ତାଙ୍କର ପଣ୍ଡାଗିରି ପାଉଣା ହେଲ ଟଙ୍କାରୁ ସେ ଉଠେଇ ନେବେ । ପଣ୍ଡାଙ୍କୁ ଟିକଏ ସୁପ୍ରସନ୍ନ କରିପାରିଲେ ବର୍ଷକ କାମ ଛ ମାସରେ ହୋଇଯିବ । ପଣ୍ଡା ବହୁତ ରକମର ଅଛନ୍ତି । ଦେଖି ଶୁଣି ଜଣକୁ ବାଛିବାକୁ ପଡ଼ିବ । ଗୋଟିଏ ହେଲା ପକେଟ ଦର୍ଶନ ପଣ୍ଡା । ଏମାନଙ୍କର ନଜର ସବୁବେଳେ ଯାତ୍ରୀର ପକେଟ ଉପରେ ଥାଏ । ଭେଟଦେବା ମାନେ ପଣ୍ଡା ନାନା ଫରମାସ କରି ପକେଟ ଝଡ଼େଇବାର ବ୍ୟବସ୍ଥା କରିଦେବେ । ଆଉ ଦଳେ ପଣ୍ଡା ଅଛନ୍ତି, ସେମାନେ ଆଗ ଗୋଡ଼ ଖଟେଇବେ । ଅମୁକ କାମ କର, ସମୁକ କାମ କର, ଏଠିକି ଯା, ସେଠିକି ଯା, ଯାତ୍ରୀ ଗୋଡ଼ପରି ଖଟି ଖଟି ପ୍ରାଣାନ୍ତକ ହୁଏ । ଆଉ ଦଳେ ଅଛନ୍ତି ଗୋଡ଼ ଲମ୍ବେଇ ପଣ୍ଡା । ଯାତ୍ରୀର ସମୟ ଉପରେ ସେମାନଙ୍କର ନଜର ନଥାଏ । ଯାତ୍ରୀ ସମୟ ପାଇଁ ଯେତିକି ଛଟପଟ ହୁଏ, ପଣ୍ଡା ସେତିକି ଗୋଡ଼ ଲମ୍ବେଇ କହିବେ ଯେ ବିଷୟଟା ବଡ଼ ଗହନ, ତରତର ହେଲେ ହବନି, ତନତନ କରି ପ୍ରବନ୍ଧଟାକୁ ଦେଖିବାକୁ ହେବ । ତରତର ହେଲେ ମଳି ଧୂଳି ରହିଯିବ । ପଣ୍ଡା ଏହାଦ୍ୱାରା ନିଜ ଜ୍ଞାନର ଗଭୀରତା ଓ ଏକ୍‌ସରେ ଆଖିର ତୀକ୍ଷ୍ଣତା ସୂଚେଇ ଦିଅନ୍ତି ।

ସେ କହେଇ ଦିଅନ୍ତି ଯେ ଚୁମ୍ବକ ଯେପରି ଧୂଳି ମଧ୍ୟରୁ ଲୌହରେଣୁ ସବୁ ପଟ୍‌ପାଟ ଟାଣିଆଣେ ତାଙ୍କ ଆଖି ଠିକ୍ ସେହିପରି ଯାତ୍ରୀର ପ୍ରବନ୍ଧରୁ ଭୁଲ୍‌ତକ ପଟ୍‌ପାଟ

ଟାଣିଆଣେ, ତାଙ୍କର ଗମ୍ଭୀର ଜ୍ଞାନ-ସମୁଦ୍ରରେ ସେ ଭୁଲଗୁଡ଼ାକ ମାଜିମୁଜି ଧୋଇ ଠିକ୍ କରିଦିଅନ୍ତି ଆଉ ସେ ପ୍ରବନ୍ଧ ଭିତରେ ପୁଣି ଏପରି ଭାବରେ ସଜେଇ ଖଞ୍ଜି-ଦିଅନ୍ତି ଯେ, ପରୀକ୍ଷକ ଦେଖିବା ମାତ୍ରେ 'ବାବାରେ ଆଲୁଅ' ବୋଲି କହିବ ।

ଆଉଦଳେ ଅଛନ୍ତି ଗାଈଜଗାଳିଆ ପଣ୍ଡା । ଗାଈଜଗାଳି ଯେପରି ଗାଈମାନଙ୍କୁ ଗୋଠରେ ଛାଡ଼ିଦେଇ ନିଜେ ଗଛ ମୂଳରେ ଶୋଇପଡ଼େ, ଏ ଧରଣର ପଣ୍ଡା ଏ ସେହିପରି ଯାତ୍ରୀଙ୍କୁ କହନ୍ତି ହଉ ତମେ ଲେଖାଲେଖି କାମସାରି ମୋତେ ଡାକିବ, ମୁଁ ତୁମକୁ ମନ୍ଦିରରେ ପୂରେଇ ଦେବି । ତୁମେ ତ ଅଣ୍ଡାଳା ଉଣ୍ଡୁଳା କରି ସବୁ ଲେଖୁଛ, ମୁଁ ଟିକିଏ ଆଖି ବୁଲେଇ ନେବି । ତା'ପରେ ତମେ ତାକୁ ଭଲ କରି ଲେଖି ବନେଇ ଦେବ । ତାପରେ ମନ୍ଦିରରେ ଦାଖଲ କରିଦେଲେ କାମ ଫତେ ।

ଆଉଦଳେ ଅଛନ୍ତି ଅବଧାନିଆ ପଣ୍ଡା । ଏମାନଙ୍କ ସଂଖ୍ୟା ଖୁବ୍ କମ୍ । ଏମାନେ ଯାତ୍ରୀର ପାଖେପାଖେ ରହି ମୂଳରୁ ନବାଡ଼ିଆ କରି କାମଟା ଉଠେଇ ଦିଅନ୍ତି । ଫଳରେ ଯାତ୍ରୀ ଗୁଡ଼ାଏ ଅଯଥା ପରିଶ୍ରମରୁ ରକ୍ଷା ପାଏ । ଦୁଇଟା ପରିଚ୍ଛେଦ ଲେଖିସାରିବା ପରେ ପ୍ରଥମ ପରିଚ୍ଛେଦକୁ ବଦଳେଇବା ଦରକାର ପଡ଼େ ନାହିଁ । କାମଟା ମୂଳରୁ ପକ୍କା ହେବା ସଙ୍ଗେ ସଙ୍ଗେ ଦିଅଁ ଦର୍ଶନଟା ଚଟାପଟ୍ ହୋଇଯାଏ । ଏମିତିଆ ପଣ୍ଡା ସହଜରେ ହାବୁଡ଼େ ପଡ଼ନ୍ତି ନାହିଁ । ଏଥିରେ କିନ୍ତୁ ବହୁତ ଖଟିବାକୁ ପଡ଼େ । ଏଥର ତୁମେ ଯାଅ ଆଗ ପଣ୍ଡା' ଠିକ୍‌କର ।

କେତେ ମାସ ପରେ ଡମ୍ବୁରୁଧର ନନ୍ଦୁଙ୍କ ସଙ୍ଗେ ଦେଖାକରି କରୁଣ ବାଣୀ ଶୁଣାଇଲେ, କହିଲେ—'ଭାଇ ମୁଁ ପଣ୍ଡା ଖୋଜିଯାଇଥିଲି, କିନ୍ତୁ ଦେଖିଲି ପଣ୍ଡାମାନେ ଓଲଟି ଯାତ୍ରୀମାନଙ୍କୁ ଖୋଜୁଛନ୍ତି । ମୋତେ ତ ବେଢ଼ିଯାଇ କାଉଳିବାଉଳି କରିପକାଇଲେ । ସେମାନେ ଯାହାସବୁ ସର୍ତ୍ତ ଦେଲେ ତାହା ଷାଠିଏ ମହଣ ଘିଅ ଦେଇ ରାଧା ନଚେଇବା ଭଳି ହେଲା । ଭାବିଲି ନ ହେଲା ନାହିଁ ହେ । ଏତେ ତକଲିଫ୍ ଉଠେଇବ କିଏ ? ମୋ ଗୁଜରିଟାକୁ କେହି ନେଇଯାଇ ପାରିବେନି । ଠିକ୍ କଲି ଦାଃ ତଜ୍ କରିବି ନାହିଁ । ମନଟା ବର୍ଷେ ଦି'ବର୍ଷ ଟହଲବହଲ ହେବ, ତା'ପରେ ଠିକ୍ ହୋଇଯିବ ।'

ବନ୍ଧୁ ଜଣଙ୍କ ପ୍ରବୋଧ ଦେଇ କହିଲେ—'ଘବଡ଼ାଇଏ ମନ୍ତୁ । ଜଣେ ସର୍ଟ୍‌କଟିଆ ପଣ୍ଡା ମୋର ଦୋସ୍ତ ଅଛି । ତୁମେ ତାଙ୍କ ସଙ୍ଗେ ଦେଖାକର । ସେ ତୁମର ଅଭିଳାଷ ପୂରଣ କରିଦେବେ । 'ଡକ୍ଟରେଟ୍ ମେଡ୍ ଇଜି' ବା ସହଜଲଭ୍ୟ ଡକ୍ଟରେଟ୍ ବହି ଖଣ୍ଡିଏ ସେ ଲେଖିଛନ୍ତି । ତାହା ସେ ଛାପୁ ନାହାନ୍ତି । ଛାପିଦେଲେ

କଲମଟା ତାଙ୍କ ହାତରୁ ଖସିଯିବ । ତାଙ୍କର ବାପ୍ପା କେହି ପାଇ ନାହାନ୍ତି । ଯାଅ ମୁଁ ଗୋଟିଏ ଚିଠି ଲେଖିଦେଉଛି । ଚିଠିଟି ନେଇ ତାଙ୍କୁ ଦେଖାକରି ନମସ୍କାର କରିବ । ଆଉ କହିବ—'ତ୍ୱୟା ପଣ୍ଡା ସାହେବ ପାଶେ ସ୍ଥିତେନ ଯଥା ନିଯୁକ୍ତୋଅସ୍ମି ତଥା କରୋମି ।' ତେଣିକି ଉଜଟା ସିଧାସଳଖ ଓ ସଙ୍କୁଚିତ ହୋଇଯିବ । ସଟ୍‌କଟ୍ ଉଜପଣ୍ଡା ଓ ସୁକୁମାରିଆ ଯାତ୍ରୀଙ୍କର ଭେଟଟା ଖୁବ୍ ଆନନ୍ଦମୟ ଓ ଉତ୍ସାହପ୍ରଦ ହେଲା । ଅଧିମାରମ୍ଭ କରି ସଟ୍‌କଟ୍ ପଣ୍ଡାଏ କହିଲେ—'ସଟ୍‌କଟ୍ ଉଜର ମୂଳ ମନ୍ତ୍ରଟି ହେଲା—ଏମିତି ଗୋଟାଏ ବିଷୟ ବାଛିବ, ଯାହା କାହାକୁ ବି ମାଲୁମ୍ ନ ଥିବ । ସତକଥା ହୋଇଥିଲେ କେହି କେହି ଜାଣି ପାରିଥିବେ ଏଣୁ ଗୋଟାଏ ମୌଳିକ ମିଛ କଥାକୁ ମୂଳ ଉପାଦାନ ରୂପେ ଧରିବାକୁ ହେବ । ତା' ପାଇଁ ସେହିପରି ଗାଲୁଆ ପ୍ରମାଣସବୁ ତିଆରି କରିବାକୁ ହେବ । ପରୀକ୍ଷକମାନେ କେହି ତ ସେସବୁ କେଉଁଠି ହେଲେ ଶୁଣି ନ ଥିବେ । ସେମାନେ ପରୀକ୍ଷାବେଳେ କେବଳ ମୁଣ୍ଡ ଟୁଙ୍ଗାରି ମୋ ଆଡ଼େ ଚାହିଁବେ । ହଅଁ ଅଁ ଠିକ୍ ବୋଲି ମୁଁ ଗୋଟାଏ ରଡ଼ିଦେଲେ ସେମାନେ ସ୍ୱରକାତ ମେଲାଇ ଲଥ୍ ଲଥ୍ କସ୍ତୁଡ଼ି ହୋଇ ପଡ଼ିବେ । ତା'ପରେ ଡିଗ୍ରୀଟା ସଡ଼୍ ସଡ଼୍ ହୋଇ ତାଙ୍କ ହାତରୁ ଖସି ଆସିବ ।'

ଏବେ ଦେଖିବାକୁ ହେବ ମୌଳିକ ମିଛ ବିଷୟ ରୂପେ କେଉଁଟାକୁ ପକଡ଼ିବା । ତୁମେ ତ ଜାଣିଥିବ ଓଡ଼ିଆ ସାହିତ୍ୟରେ ଗୋଟାଏ ଅନ୍ଧାରଯୁଗ ଅଛି । ସେଇଟା ବିଷୟରେ କେହି କିଛି ଜାଣନ୍ତି ନାହିଁ । ତା'ରି ଭିତରୁ ଗୋଟାଏ ମୌଳିକ ଗାଲୁ ଗ୍ରନ୍ଥ ସୃଷ୍ଟି କରି କାଢ଼ିଦେଲେ ସମସ୍ତେ ତାକୁ ନୂଆ ବୋଲି କହିବେ । ଗୋଟିଏ ସାଇଜର କେତେଗୁଡ଼ିଏ ଅତି ପୁରୁଣା ପୋଥି କିଣିଆଣ । ପ୍ରତ୍ୟେକରେ କିଛିକିଛି ଗାଳି ପଡ଼ି ଥାଏ । ସବୁଥିରୁ କାଢ଼ି ଏକଜାଗର ଆଉ ଗୋଟିଏ ପୋଥିର ପଟା ଦୁଇଟି ଲଗାଇଦିଅ । ପୁରୁଣାକାଳିଆ ଭାଷା ଓ ପୁରୁଣାକାଳିଆ ରୀତିନୀତି, ଚାଲିଚଳନ ଥିବା ମୁଁ ଗୋଟିଏ ନାଟକର ପାଣ୍ଡୁଲିପି ଲେଖିଦେବି । ଜଣେ ତାଳପତ୍ର ଲେଖନକାର ଘରକୁ ଡାକେଇ ଆଣି ପୋଥିରେ ଲେଖେଇ ନବ । ଲେଖନକାରଟି ମୂର୍ଖ ହେଲେ ଉତ୍ତମ । କେତେଗୁଡ଼ାଏ ଠିକ୍ ଶବ୍ଦକୁ ସେ ଭୁଲ କରି ଲେଖିବାରେ ସମର୍ଥ ହେବ । କାହାର ସିନା ପୋଥିରୁ ପାଣ୍ଡୁଲିପି ହୁଏ, ଆମର ପାଣ୍ଡୁଲିପିରୁ ପୋଥି ହେବ । ଜଅଁସିଆ ହୋଇ କେଉଁ କାଳରୁ ମରିଯାଇଥିବା କୌଣସି ଏକ ବୁଢ଼ା ଗାଦିରୁ ଏ ପୋଥି ମିଳିଛି ବୋଲି କୁହାଯିବ । ତା' ବଇଁଶରେ ତ କେହି ନ ଥିବେ । କିଏ କାହାକୁ କ'ଣ ପଚାରିବ । ଆମେ ଯାହା କହିବୁ ସେଇଟା ବେଦର ଗାର ହୋଇଯିବ । ହଁ, ଆଉ ଗୋଟିଏ କଥା । ପୋଥିରେ ଲେଖକଙ୍କ ଜନ୍ମକଥା ଟିକିଏ ଲେଖିଦେବି । କେଉଁ

ଗଜପତିଙ୍କ କେଉଁ ଅଙ୍କରେ ପୋଥି ଲେଖାହେଲା ତାହା ଠିକି ହୋଇଯିବ । ଅବିଶ୍ୱାସର ଧାସ ମଧ୍ୟ ରହିବ ନାହିଁ ।

ପୋଥି ଖଁା ଦେଇଦେବ 'ସୁଜନାର ବାହୁଘର' ଲେଖକ—ପାରଲା ଦାସ । ଏବେ ଯାଅ, ମାସେ ପରେ ଆସ ପାଣ୍ଡୁଲିପି ନେଇଯିବ । ଲେଖନକାରଙ୍କୁ ଦୁଇ ତିନି ମାସ ହଟାଇବାକୁ ଲାଗିଯିବ; ତା'ପରେ ତୁମେ ଥିସିସ୍ ଖାତା ବାନ୍ଧି ପ୍ରସ୍ତୁତ ହୋଇଯିବ ଆଉ ଡକ୍ଟରେଟ୍ ମନ୍ଦିରରେ ପଶି ଦେଇ ଆସିବ । ହେଠା ଭିତରକୁ ମହାପାତ୍ର, ବାହାରକୁ ମହାପାତ୍ର ଓ ଗ୍ରୁଟିଆ ଆଦଙ୍କ କିଛି କିଛି ଭୋଗ ଲଗେଇ ଦେଲେ ପରୀକ୍ଷାଟା ଚଞ୍ଚଳ ହୋଇଯିବ । ତା'ପରେ ଶେଷଥର ପାଇଁ ସେଇଠି ତୁମର ଆମର ଭେଟ ସେହି ପରୀକ୍ଷା ଥାନରେ ହୋଇଯିବ । ଦେଖିବ ମୁଁ କେମିତି ପରୀକ୍ଷକମାନଙ୍କୁ ପଦେଇ ଦେବ । ମୋ ସାଙ୍ଗରେ ମୋଟ ତିନିଥର ଭେଟ ପରେ ତୁମେ ଡକ୍ଟରେଟ୍ ସିନ୍ଦୂର କପାଳରେ ଲଗେଇବ । ପରୀକ୍ଷକମାନଙ୍କୁ ଭୁଆଁ ବୁଲେଇ ଡିଗ୍ରୀ ଆଦାୟ କରିନେବ । ସେତେବେଳେ ଉଲୁଆ ଦନ୍ତଥିବା ପଣ୍ଡାମାନେ ବୁଝିଯିବେ, ସର୍ଟକଟ୍ ଡକ୍‌ପଣ୍ଡାର କରାମତି କେତେ ।

ସତକୁସତ ପରୀକ୍ଷାବେଳେ ପରୀକ୍ଷକମାନେ ନିଜନିଜ ମୁଣ୍ଡର ପଙ୍କ ଚପି ଲଗିଲେ । ହେଲେ ଚୋଡ଼ିଟାଏ କି ଚଢ଼ଣାଟାଏ ପାଇଲେ ନାହିଁ । ପରୀକ୍ଷାର୍ଥୀ ପାଖରେ ପରୀକ୍ଷକ ହାର ଯିବନା । ଯୁଗ ତ ସହଜେ ଅନ୍ଧାସ୍ତ୍ର, ନାୟିକା ପୁଣି ସୁଜନା, ସେଥିରେ ପୁଣି ତା'ର ବାହାଘର, ସ୍ୱୟଂ ସୃଷ୍ଟିକର୍ତ୍ତା ଜାଣି ନଥିବେ । ମୁଁ କଣ ଛାର । ପରୀକ୍ଷାର୍ଥୀ ପୂର୍ବଜନ୍ମରେ କେତେ ତପସ୍ୟା କରିଥିଲା କେଜାଣି ଏ ଜନ୍ମରେ ଏଡ଼େ ଅମୂଲ୍ୟ ପୋଥିଟାଏ ପାଇଗଲା । ଆଃ ! ମୋ ହାତରେ ପଡ଼ିଥିଲେ ମୁଁ ଗୋଟିଏ ଝିଙ୍କାରେ 'ଡି. ଲିଟ୍'ଟା ନେଇ ଆସିଥାଆନ୍ତି ।

ଆଲୋଚନାବେଳେ ସମସ୍ତେ ବୁଝାବୁଝି ହେଲେ ଯେ ସେମାନେ ଏହି ପୋଥି ବିଷୟ ବହୁଆଗରୁ ଶୁଣିଥିଲେ । ଜଣେ କହିଲେ ଯେ ଜଣକ ଘରେ ସେ ପୋଥି ଦେଖି ଗୋଟାଏ ପଦ ପଢ଼ିଥିଲେ ବି ନାହିଁ ସେ ପୋଥି ମାଲିକ ତାଙ୍କ ହାତରୁ ଛଡ଼ାଇ ନେଇଗଲା, କହିଲା ପୋଥିପାଠ କାହାକୁ ଦେଖାଇବାର ନୁହେଁ । ଆଉ ଜଣେ କହିଲେ …ଯେ ତାଙ୍କର ଏ ପର୍ଯ୍ୟନ୍ତ ସେ ପୋଥିପାଠରୁ ଦୁଇଟାଏ ଗୋଟାଏ ମନେ ଅଛି । ପ୍ରବନ୍ଧଟା ଯେ ଉତ୍ତୁଙ୍ଗ ଉପାଦେୟ, ଏଥିରେ କାହାରି ତିଳେମାତ୍ର ସନ୍ଦେହ ରହିଲା ନାହିଁ । ସର୍ଟକଟିଆ ଡକ୍ ପିଣ୍ଡାଏ ନିଜ ଯାତ୍ରୀ ଅଧ୍ୟାପକ ଡମ୍ବରୁଧର ସାମଲଙ୍କ ମୁଣ୍ଡରେ ଡକ୍ଟରେଟ୍ ଶିରପା ବାନ୍ଧି ବିଜୟୋଲ୍ଲାସରେ ମନ୍ଦିରରୁ ଫେରିଲେ ।



# ପକ୍ଷୀ ପତନ

ବ୍ରାହ୍ମଣ ସାହିର ପଣ୍ଡିତ, ଅଧାପଣ୍ଡିତ ଓ ଛାଟ୍‌ପଣ୍ଡିତମାନେ ବସି ଦ'ପହରିଆ ଖୁସିଗପ ଚଳେଇ ଥାନ୍ତି । ଜଣେ ଜଣେ ବଟୁଆରୁ ପାନ ଭାଙ୍ଗୁ ଭାଙ୍ଗୁ ଶ୍ଳୋକ ଗୋଟାଏ ଗୋଟାଏ ଝାଡ଼ି ଦେଉଥାନ୍ତି । ଯୋଗଷ ବନ୍ଧିଦେଲେ ଯେମିତି ପାଗମାନେ ଠେଲାପେଲା ହୋଇ ଖୁଣ୍ଟି ଲାଗନ୍ତି, ଶ୍ଳୋକ ପାଠ ପରେ ଅନ୍ୟାନ୍ୟ ପଣ୍ଡିତ ସେମିତି ଶ୍ଳୋକାଂଶମାନଙ୍କୁ ଖୁଣ୍ଟିବାରେ ଲାଗିଯାଉଥାନ୍ତି । ଜଣେ ପଣ୍ଡିତ ସକୁର ହସ୍ତ ପ୍ରସ୍ତୁତ ପାନଖିଲଟିକୁ ପାଟିରେ ଗୁଞ୍ଜି ଦେଇ ଓ ବଟୁଆ ଡୋରଟିକୁ ଟାଣିଦେଇ ବଲ୍‌ବଲେଇଲେ —ଅନ୍ନଚିନ୍ତା ଚମତ୍କାର, କାନ୍ତରେ କବିତା କୁତଃ । ଆଉ ଜଣେ ପଣ୍ଡିତ ଗାମ୍ଭୀର୍ଯ୍ୟରେ ମୁହଁଟାକୁ ଯୋଚ୍ଛଦେଇ ହାଙ୍କିଲେ—ଅହମିଦଂ ଶ୍ଳୋକଂ କଦାପି ସ୍ୱୀକାର କରିବ ନାହିଁ । ପ୍ରଥମ ପଣ୍ଡିତ ଟିକିଏ ଉତ୍ତେଜିତ ହୋଇ କହିଲେ—ଏ ଶ୍ଳୋକ ପୁସ୍ତକେ ଅଛି । ଏହା ଶାସ୍ତ୍ରୀୟ ବାକ୍ୟ । ବହବଃ ପଣ୍ଡିତାଃ ଏହାକୁ ସ୍ୱୀକାର କରି ସାରିଛନ୍ତି । ଭବତଃ ସ୍ୱୀକାର ବା ଅସ୍ୱୀକାରକୁ କେହି ଗୁରୁତ୍ୱ ଦେବେ ନାହିଁ । ବିଶେଷତଃ ଅହଂ,—ଦ୍ୱିତୀୟ ପଣ୍ଡିତ ଅଧିକ ଉତ୍ତେଜିତ ହୋଇ ଅଧିକ ପାଟିରେ କହିଲେ କିନ୍ତୁଂ, କୁତଃ ଆସ୍ୱାଦ ? ସମସ୍ତେ ଏହାକୁ ଗ୍ରହଣ କରିଛନ୍ତି ବୋଲି କହିବା ଆପଣଙ୍କ ପକ୍ଷେ ବଡ଼ ଆସ୍ପର୍ଦ୍ଧାର ବିଷୟ । ଏଇଠି ଆପଣଙ୍କ ସପକ୍ଷରେ ତ ମୁଁ ଏହି ଶ୍ଳୋକର ଔଚିତ୍ୟକୁ ଅସ୍ୱୀକାର କରୁଛି ।

—ଖାଲି ଅସ୍ୱୀକାର କଲେ ଚଳିବ ନାହିଁ । ପ୍ରମାଣଂ କୁରୁ, ଯଦି ନ କୁରୁ ତେବେ ଭବାନ ଅପଣ୍ଡିତ ପଦବାଚ୍ୟ ହେବେ ।

—ଅହଂ ପ୍ରସ୍ତୁତ । ଦେଖନ୍ତୁ ଅନ୍ନଚିନ୍ତା କାହାର ନାହିଁ । ଜଣେ ଭିକ୍ଷାର୍ଥୀଠାରୁ ଆରମ୍ଭ କରି ରାଜାଧିରାଜ ବା ମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର କ୍ଷୁଧା ଜାତହୁଏ । କ୍ଷୁଧା କାହାର ନାହିଁ । କ୍ଷୁଦ୍ରାତିକ୍ଷୁଦ୍ର ପିପିଲିକାଠାରୁ ପ୍ରକାଣ୍ଡ ମାତଙ୍ଗ ପର୍ଯ୍ୟନ୍ତ ସମସ୍ତେ କ୍ଷୁଧାତୁର । ସେଥିଲାଗି ସମସ୍ତେ ନିଜ ନିଜ ଅନ୍ନ ସନ୍ଧାନରେ ଲାଗି ପଡ଼ିଛନ୍ତି । କ୍ଷୁଧା ଓ ଅନ୍ନଚିନ୍ତା ଏକତ୍ର ବାସ କରନ୍ତି । ମାନବ ପ୍ରକାଣ୍ଡ ବନ୍ୟଗଜର କ୍ଷୁଧା ତଥା ଅନ୍ନଚିନ୍ତା ବୃଦ୍ଧି କରିଦେଇ ତାହାକୁ ବିକଳ କରିଦିଏ । ତତ୍ପରେ ତାର ଉପଶମର ଲୋଭ ତାକୁ ଦେଖାଏ । ଫଳତଃ ସେ ବଶୀଭୂତ ହୋଇ ମାନବର ଅଧୀନ ହୁଏ ଏବଂ ତାର ଆଦେଶ ପାଳନ କରେ । ମାନବର ଇଙ୍ଗିତରେ ସେ ସୁକଠିନ କାର୍ଯ୍ୟମାନ ସମ୍ପାଦନା କରେ । ସର୍କସରେ ନାନା କୌତୁକପ୍ରଦ କାର୍ଯ୍ୟ ଦେଖାଇ ଜନମନ ହରଣ କରେ । ଅଧୁନା ପର୍ଯ୍ୟନ୍ତ କାବ୍ୟଶାସ୍ତ୍ରର ରାଜ କାଳିଦାସ, ଭବଭୂତି, ମାଘ, ବାଣଭଟ୍ଟ—

ମୂଢ଼ ଯଦ୍ୟପି ତବ ଔଦ୍ଧତ୍ୟ, ମନୁଷ୍ୟ କ୍ଷେତ୍ରରେ ଗଜ ଅର୍ଥ ମୂର୍ଖ । କାଳିଦାସ ଭବଭୂତିଙ୍କୁ ମୂର୍ଖ କହିବ । ତବ ରସନା ଛିଣ୍ଡି ପଡ଼ୁ । ହେ ହେ ମମ କର୍ଣ୍ଣଦ୍ୱୟ ତମେ ଫୁଟିଯାଅ ଯେହେତୁ ଏ ଅନାର୍ଯ୍ୟଜନୋଚିତ ବାକ୍ୟ ତଦ୍‌ଗହ୍ୱରରେ ମନ୍ଥର ହୋଇଅଛି । କବିଶ୍ରେଷ୍ଠ କାଳିଦାସଙ୍କୁ ପୁଣି ମୂର୍ଖ ପଦବୀ ! ନରାଧମ ଅନାର୍ଯ୍ୟ ।

—ହେ ହେ ବୋଧ ! ଶାନ୍ତିଂ ଭବ, ଶାନ୍ତିଂ ଭବ । ଏଠାରେ ମୁଁ ଗଜକୁ ଶକ୍ତିଶାଳୀ, ସାମର୍ଥ୍ୟବାନ୍ ଅର୍ଥରେ ଗ୍ରହଣ କରିଛି । ଏବଂବିଧ ଅର୍ଥ ଯଦି ଭବାନ୍ ବୁଝିବାକୁ ଅସମର୍ଥ ତର୍ହି ଘୋଟକ ଘାସ କର୍ତ୍ତନଂ କୁରୁ—

—ଆରେରେ ପାଷାଣ ଦୁର୍ବୃତ୍ତର ଯଦି ଏବଂବିଧ ଆସ୍ପର୍ଦ୍ଧା ମାଂ ଘୋଟକ ଘାସଂ କର୍ତ୍ତନ କର୍ତ୍ତୁଂ ଉପଦେଶଂ ଦଦାସି । ତବ ଶିରୋପରି ବଜ୍ରଂ ପଡ଼ୁ ।

—ମମ ଶିରସି କିମର୍ଥଂ ପଡ଼ୁ ? ତବ ଶିରସି ପଡ଼ୁ । ଏବଂବିଧ ଅନାର୍ଯ୍ୟୋଚିତ କଥୋପକଥନ ତବ ସଙ୍ଗେ ନ କରିଷ୍ୟାମି । ହେ ହେ ଅନ୍ୟାନ୍ୟ ପଣ୍ଡିତଗଣ ଭବନ୍ତଃ ଶୃଣୁତ । କାଳିଦାସସ୍ୟ ଅନ୍ନଚିନ୍ତା ଥିଲା । ତେଣୁ ସେ ସଂସ୍କୃତ ପଠିତ୍ୱା ଅମୀଦ୍ଧ କାବ୍ୟରଚନାକୃତ୍ୱା ରାଜସଭାୟାଂ ପଢ଼ୁଥିଲେ ଏବଂ ରାଜାଙ୍କଠାରୁ ସ୍ୱର୍ଣ୍ଣମୁଦ୍ରା ପାଇ ନିଜର ଅନ୍ନସଂସ୍ଥାନ କରୁଥିଲେ । ଅନ୍ନଚିନ୍ତା ଥିବାରୁ ସେ ଅଲୌକିକ କାବ୍ୟ ରଚନାରେ ବ୍ରତୀ ହୋଇଥିଲେ । ଅଜ ମଣ୍ୟନ୍ତୁ, ରାଜାଙ୍କର ଅନ୍ନଚିନ୍ତା ନଥିଲା । ତେଣୁ ସେ କାବ୍ୟ ରଚନାରେ ଅସମର୍ଥ ଥିଲେ । ଅଥ ଇଦମ ପ୍ରମାଣିତଃ ଯତ୍ର ଅନ୍ନ ଚିନ୍ତା କାବ୍ୟ ରଚନାରେ ସହାୟକ, ପ୍ରତିବନ୍ଧକ ନହି ନହି—

—ଶାନ୍ତିଂଭବ ମୂଢ଼ । ତବ ସାମାନ୍ୟତମ ଜ୍ଞାନ ନାସ୍ତି । ତସ୍ୟ ଅନ୍ନଚିନ୍ତା ଥିଲା । ଅହଂ ସ୍ୱୀକାର କରୁଛି । ଯଦ୍ୟପି ରାଜା ସ୍ୱର୍ଣ୍ଣମୁଦ୍ରାଦ୍ୱାରା ତତ୍ ଅନ୍ନଚିନ୍ତା ଦୂର କରିନଥାନ୍ତେ ତେବେ କିଂ ହୋଇଥାନ୍ତାରେ ମୂଢ଼ । କ୍ଷୁଧାର ଭୀଷଣ ସାଗରରେ କବି ଓ କାବ୍ୟ ନିମଜ୍ଜିତ ହୋଇ ପଞ୍ଚତ୍ୱପ୍ରାପ୍ତ ହୋଇଥାନ୍ତେ । ଅନ୍ନଚିନ୍ତାର ବିନାଶରେ କାବ୍ୟସ୍ଫୁରଣ ଭବତି । ତବ ଚିନ୍ତାଶକ୍ତି ଅସ୍ତି ? ତେବେ ବଦନ୍ତୁ, ପୃଥିବୀରେ କ୍ଷୁଧା ଅନ୍ତର୍ହିତ ହୋଇଯିବ । ତେଣୁ ଅନ୍ନଚିନ୍ତା ଲୋପ ପାଇଯିବ । ଯସ୍ୟ ଅନ୍ନଚିନ୍ତା ନାସ୍ତି-ତସ୍ୟ କେହି କାର୍ଯ୍ୟ ନକରି ଦିବାରାତ୍ରୀ ଶୟନଂ କରିଷ୍ୟତି । କର୍ମବିନା ସଭ୍ୟତା ଧ୍ୱଂସ ଭବତି । ଅହୋ କିଂ ଗୁରୁତର ପରିସ୍ଥିତି ଭବତି । ଅନ୍ନ ଚିନ୍ତା ହିଁ ସଂସାରକୁ ଏହି ପରିସ୍ଥିତିରୁ ରକ୍ଷା କରେ । ତତଃ ଅନ୍ନଚିନ୍ତାର ଔଚିତ୍ୟ ସର୍ବଜନ ସ୍ୱୀକାର୍ଯ୍ୟ ।

—ପାଷାଣ ଅହଂ ସ୍ୱୀକାରଂ ନ କରିଷ୍ୟାମି । ତ୍ୱଂ ଏବ ମନ୍ଦ ସ୍ୱଭାବ ବିଶିଷ୍ଟ ଧୂର୍ତ୍ତପଣ୍ଡିତଃ । ଅବାନ୍ତର ଯୁକ୍ତିଂକୃତ୍ୱା ସମସ୍ତଙ୍କୁ ପ୍ରତାରଣା କରୁଅଛି । ତତ୍ ପ୍ରତାରଣା

ଅଦ୍ୟ ମମ ପାଶେ କଦାପି ନ ଚଳିଷ୍ୟତି । ରେ ରେ ଚୌର ଶାଳକ ପ୍ରବର କଥଂକୃତ୍ୱା ଯଷ୍ଟୃତ ପଶ୍ଚାଦ୍ଧାବିଂ ଉଡ୍ଡୀନ ଭବାନ୍ ।

—ପିଶାଚ ଅହଂ ଚୌରତ ? ତ୍ୱଂ ଏବ ଡାକୁ, ମଧ୍ୟାନସ୍ୟ ଧ୍ୱବାହ କର୍ମେ ତ୍ୱଂ କମ୍ କୃତିକଲେ ପରମାଣ ହୋମଦ୍ରବ୍ୟ ଗୃହେ ଶ କଣ ନ ଥିଲ ? ତେବେ ମାଂ କମର୍ଥଂ ଗୃହେର ବୋଲି କହୁଛ । ଅରୁଆ ତଣ୍ଡୁଳ ତବ ପ୍ରାପ୍ୟ ଥିଲ ଦୁଇ କଲେ, ଭଣ୍ଡାର ନାହାକସ୍ୟ ପ୍ରାପ୍ୟ ଥିଲ ଷିକଲେ, ଶଙ୍ଖ ବାଦକସ୍ୟ ପ୍ରାପ୍ୟ ଥିଲ ଏକ କଲେ । ଭବାନ୍ କାହାକୁ ନଦେଇ ସମସ୍ତ ତଣ୍ଡୁଳ ଅପହରଣ କଲ, ଭବାନ୍ ଡାକୁ ନୁହଁ ତ ଆଉ କଅଣ ? ଅଥଚ ମାଂ ଚୌରଂ ଆଖ୍ୟା ଦଦସି । ଏବମ୍ବିଧ ତବ ସାହସ । ସାବଧାନ ପଶ୍ୟମମ ଲଗୁଡ଼ଂ ।

—କମ୍ ମାଂ ଲଗୁଡ଼ ଭୟ ଦେଖାଉଛ ? ପଶ୍ୟ ମମ କାଷ୍ଠପାଦୁକା ତବ ଦନ୍ତ ପଙ୍କ୍ତି ଝାଡ଼ିଦେବ । ଆଗଚ୍ଛ ଆଗଚ୍ଛ ମମପାଶେ ଆଗଚ୍ଛ । ମମପାଶେ ଆଗଚ୍ଛ । ଅହଂ ତ୍ୱଂ ଯମାଳୟେ ପ୍ରେରୟିଷ୍ୟାମି ।

ଦୁଇ ବୃଦ୍ଧ ପଣ୍ଡିତ ନିଜ ନିଜ ହସ୍ତରେ ଲଗୁଡ଼ ଓ କଠଉ ଅସ୍ତ୍ରବତ୍ ଚାଳନା କରି ଅଗ୍ରସର ହେଲେ । ଅନ୍ୟ ପଣ୍ଡିତଗଣ—ହୋ ହୋ ନିବର୍ତ୍ତ ନିବର୍ତ୍ତ କହି ଧାଇଁ ଆସିଲେ । ହଠାତ୍ ଏକ ବିକଟ ଶବ୍ଦ ଶୁଣାଗଲା । ସମସ୍ତେ ସେ ଆଡ଼େ ଚାହିଁ ଦେଖିଲେ ଆଣ୍ଠୁଆ ଗୋପାଳ ମଠର ଗୁମାସ୍ତା ସେହି ଆଡ଼େ ମାଡ଼ି ଆସିଲଦେଲେ ରଡ଼ି ଛାଡ଼ୁଛି— ଆହେ ପୁରାଣ ପଣ୍ଡିତେ କୁଆଡ଼େ ଗଲ ହେ । ଆହେ କଅଣ କରୁଛ କହେ । ଆହେ ଶୁଭୁନାହିଁ କହେ । ହୋ ପୁରାଣ ପଣ୍ଡିତେ । ଆରେ କଏ କେଉଁଠି ଅଛ ଧାଇଁଆସ ହୋ ଆମ କଥା ସରିଗଲା । ମହନ୍ତ ମହାରାଜାଙ୍କ କଥା ସରିଗଲା । ଶୀଘ୍ର ଆସ । ଧାଇଁଆସ ।

ଲଢ଼େଇ କରିବାକୁ ଉନ୍ମୁଖ ଆସୁଥିବା ଦୁଇ ପଣ୍ଡିତଙ୍କ କ୍ରୋଧାଗ୍ନିରେ ଯେପରି ପାଣି ଛିଞ୍ଚି ହୋଇଗଲା । ଦୁହେଁ ପରସ୍ପର ମୁହଁକୁ ଚାହିଁ ଈଷତ୍ ହସିଦେଲେ । ଜଣେ କହିଲେ—ମହନ୍ତ ମହାରାଜ ବୋଧହୁଏ ମହାପଥର ଯାତ୍ରୀ ହୋଇଗଲେ । ଅନ୍ୟ ଜଣକ କହିଲେ ଶୁଙ୍କି ବିସ୍ତାରରେ ବିପୁଳ ଅର୍ଥ ବ୍ୟୟ ଅବଶ୍ୟ ହେବ । ଉଦ୍ୟଭୋଜନର ବନ୍ୟାରେ ଚତୁର୍ଦ୍ଦିଗ ପ୍ଲାବିତହେବ ତହିଁରେ ଆମ୍ଭେମାନେ ଏକ ପ୍ରକାର ଅବଗାହନ କରିବୁ ।

ଗୁମାସ୍ତା ପାଖକୁ ଆସିବାରୁ ସମସ୍ତେ ଉଦ୍‌ବେଗର ସହ ପଚାରିଲେ—ଆହେ ମହନ୍ତ ମହାରାଜଙ୍କର କ'ଣ ହୋଇଲା ?—

ଗୁମାସ୍ତା ପୁଣିପରେ ଉଠି ଛୁଟି କହିଲା—ଆହେ କେମିତିଆ ଲୋକର ପଣ୍ଡିତ ହେ ! ବେଗିବେଗି ଆସୁନାହାନ୍ତି କିମ୍ପା ପଣ୍ଡିତେ ? ବେଳଟି ପଶ୍ଚିମରୁ ଯାଉଛି ଯେ ! ଆହେ ବୁଝୁନାହାନ୍ତି ! ଆହେ ତମକୁ ଖେଳ ଲାଗିଛି ! ଆମର ତ ସବୁ ଯାଉଛି ! ଅହେ ତଡ଼ର ତଡ଼ଚ ହୁଅନ୍ତୁ, ଚାଲିଆସ—

ତରତର ହୋଇ ମଠ ଆଡ଼େ ଧାଇଁଲାବେଳେ ପଣ୍ଡିତମାନେ ନିଶ୍ଚିନ୍ତ ହୋଇଗଲେ ଯେ ମହନ୍ତ ମହାରାଜ ଶରୀରରକ୍ଷା କରିସାରିଲେଣି । ପଇଟାଗୁଡ଼ିକ ମାରି ହେବା ସୁନିଶ୍ଚିତ । ହଁ—ମଠ ପକ୍ଷରୁ ନୂତନ ପଇଟା ଅବଶ୍ୟ ଦିଆଯିବ । ମହାପ୍ରସାଦ ଓ ଦକ୍ଷିଣା ଲାଭରେ ଅନ୍ୟୂନ ମାସାର୍ଦ୍ଧକାଳ ଚଳିଯିବ । ଏହି-ଠାରୁ ସମସ୍ତେ ଯାଇ ମଠରେ ପହଞ୍ଚିଲେ । ଟିକିଏ ଦୂରରୁ ସମସ୍ତେ ଦେଖିଲେ ପ୍ରକାଣ୍ଡ ବପୁବନ୍ତ ମହାରାଜ ଧ୍ୟାନ କଲାପରି ନିଶ୍ଚଳ ଓ ଗମ୍ଭୀର ହୋଇ ବସିଛନ୍ତି । ପୂର୍ବୋକ୍ତ ଦୁଇ ପଣ୍ଡିତେ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଅନୁଚ୍ଚ ଗଳାରେ କଥାବାର୍ତ୍ତା ହେଲେ ।

ମହନ୍ତ ମହାରାଜ ମହାପୁଣ୍ୟବନ୍ତ ଓ ଭାଗ୍ୟବାନ ଥିଲେ ।—

—ତା ନହେଲେ ଏପରି ଧ୍ୟାନସ୍ଥ ହୋଇ ଶରୀରରକ୍ଷା କରି ନଥାନ୍ତେ ।—

—ଇହଲୀଳା ସମ୍ବରଣ ପରେ ମଧ୍ୟ ଦେହରେ କିପରି ତେଜ ଦେଖାଯାଉଛି ।—

—ପୁଣ୍ୟାତ୍ମା, ପୁଣ୍ୟ ଶରୀର ନ ହୋଇଥିଲେ ଏପରି ହେବା ସମ୍ଭବ ନୁହେଁ ।—

—ସାବଧାନ ହୁଅ ବର୍ତ୍ତମାନ ଦୁଃଖାନୁଭବର ଲକ୍ଷଣ ଦେଖାଇବାକୁ ହେବ ।—

ନେଡ଼ରେ ଲୋତକ ସଞ୍ଚାର କରାଇ ମୁଖ୍ୟ ପଣ୍ଡିତଦ୍ୱୟ ଅତି ସନ୍ତର୍ପଣରେ ମହନ୍ତଙ୍କ ନିକଟରେ ପହଞ୍ଚିଲେ । ଅନ୍ୟାନ୍ୟ ଅର୍ଦ୍ଧପଣ୍ଡିତଗଣ ପଛେ ପଛେ ଠିଆ ହେଲେ । ହଠାତ୍ ଆକାଶରୁ ଯେପରି ବଜ୍ରପତନ ହେଲା । ଗମ୍ଭୀର ଗଳାରେ ମହନ୍ତ ମହାରାଜ କହିଲେ—ବସନ୍ତୁ ଆପଣମାନେ । ମୁଖ୍ୟ ପଣ୍ଡିତ ଦ୍ୱୟ ଚମକି ପଡ଼ିଲେ ! ଦୁହିଁଙ୍କ ହାତରୁ ଲଗୁଡ଼ି ଓ ବଟୁଆ ଖସି ପଡ଼ିଲା । ସମସ୍ତଙ୍କ ମୁହଁରେ ଅସ୍ପଷ୍ଟ ଶବ୍ଦ—ଏଁ ବଞ୍ଚିଛନ୍ତି !!—ସମସ୍ତଙ୍କ ମୁଖମଣ୍ଡଳରେ ବିଷାଦର ଘନାନ୍ଧକାର ଘୋଟିଗଲା । ମାର୍ଜାର ମୁଖରୁ ମାଛଭଜା ଖଣ୍ଡିକ କିଏ ଯେପରି ଛଡ଼ାଇ ନେଇଗଲା । ତେବେ ମହନ୍ତ ମହାରାଜ ବଞ୍ଚିଛନ୍ତି ! ଦୁରାତ୍ମା ଗୁମାସ୍ତା ଏପରି ଭୁଆଟିଲା କାହିଁକି ?

ମହନ୍ତ ମହାରାଜଙ୍କ ସମ୍ମୁଖ ଆସନରେ ପଣ୍ଡିତଗଣ ଉପବେଶନ କଲେ । ମହନ୍ତ ମହାରାଜ ଧୀର ଗମ୍ଭୀର ସ୍ୱରରେ କହିଲେ—ମୋର ବାଆଁ କାନ୍ଧରେ ଝିଟିପିଟିଟାଏ ଘୁରରୁ ପଡ଼ି ବାଆଁ ହାତ ବାଟେ ଓହ୍ଲାଇ ତଳକୁ ପଳେଇଲା । ମୁଁ ଶୁଣିଛି ଏହା କୁଆଡ଼େ ଏକ ଖରାପ ଲକ୍ଷଣ । ଏବେ କଅଣ କରିବ କହନ୍ତୁ । ମୋ ମନରୁ ପ୍ରସନ୍ନତା ଲୋପ ପାଇଗଲାଣି । ପ୍ରତିକାରର ବ୍ୟବସ୍ଥା କରନ୍ତୁ ।

ପ୍ରଥମ ମୁଖ୍ୟ ପଣ୍ଡିତ କିଛି ସମୟ ଗୁମ୍ ମାରି ବସିଗଲେ । ତା'ପରେ କହିଲେ —ଆପଣଙ୍କ ଅନୁମାନ ଯଥାର୍ଥ । ଉହ୍ୟାତ ସାଗର ପୋଥିରେ ଲେଖା ହୋଇଛି – "ଯଦ ନପତତ ପଲ୍ଲୀ ବାମ ଭାଗେ ନରାଣାଂ, ଧନଧାନ୍ୟ ଭଯ୍ୟ ନଶ୍ୟନ୍ତି ଗୃହ କଳହ ଏବଚ ।" ଏହାର ପ୍ରତିକାର ମଧ୍ୟ ଏଥିରେ ବର୍ଣ୍ଣିତ ଅଛି, ଧୁପୁର ବୀଜ ମିଶ୍ରିତ ଜଳରେ ସ୍ନାନ, ନବଗ୍ରହ ପୂଜା ସପ୍ତାହବ୍ୟାପୀ ଭୁରି ବ୍ରାହ୍ମଣ ଭୋଜନ, ବିପ୍ରଗଣେ ଦାନ ।

ମହନ୍ତ ମହାରାଜ ଦାନ-ଭୋଜନାଦି କର୍ମପ୍ରତି ବିଶେଷ ବିମୁଖ ନଥିଲେ ସତ କିନ୍ତୁ ଯେଉଁ ଉପଲକ୍ଷେ ଏହା ହେବ ସେ ଉପଲକ୍ଷ ପ୍ରତି ଅତ୍ୟନ୍ତ ବିମୁଖ ଥିଲେ । ବିବାହ ଭୋଜି, ଶୁଦ୍ଧିକ୍ରିୟା ଭୋଜନରେ ଯେପରି ପାର୍ଥକ୍ୟ ଥାଏ, ସେହି ପାର୍ଥକ୍ୟ ମହନ୍ତ ମହାରାଜ ଅନୁଭବ କଲେ । ସେ ବିମର୍ଷ ହୋଇ କହିଲେ—କପାଳ ଲିଖନ କେ କରିବ ଆନ । ଏ ସବୁ ଅନାବଶ୍ୟକ ।

ଦ୍ୱିତୀୟ ମୁଖ୍ୟପଣ୍ଡିତ ପ୍ରଥମଙ୍କୁ ଆଖି ଠାରିଦେଇ ଆରମ୍ଭ କଲେ—ଆଜ୍ଞା ଟିକଏ ଅପେକ୍ଷା କରନ୍ତୁ । ମୋର ଟିକଏ ସନ୍ଦେହ ହେଉଛି, ମୁଁ ଟିକଏ ଅନୁସନ୍ଧାନ କରିସାରେ; ତାପରେ ଯଥାର୍ଥ କଥାଟି କହିବି । ଆଚ୍ଛା ଗୃହମାତ୍ରାଏ, ପଲ୍ଲୀ ପତନ ସମୟରେ ତୁମେ କେଉଁଠି ଥିଲ ?

—ମୁଁ ତ ମହାରାଜଙ୍କ ଡାହାଣ ପାଖରେ ଥାଇ ତାଙ୍କ ଡାହାଣ ହାତରେ ତେଲ ମାଲିସ କରୁଥିଲି ।

ଏ ସବୁ ଏତେ କଥା ଅଛି ? ଏସବୁ ଗୁଣ୍ଡି ବିଚାର କଲେ ଚଳିବ କପରି ? ହଁା , ପଲ୍ଲୀ ପଡ଼ିଲା କେଉଁ ଅଙ୍ଗରେ, କେଉଁ ଅଙ୍ଗରେ ଓହ୍ଲାଇ ଗଲା ଆଉ କେଉଁ ଆଡ଼େ ପଳାଇ ଗଲା ?

—ଆଜ୍ଞା ସବୁ ଦେଖିଛି । ସବୁ ମନେ ବି ରଖିଛି । ଏବେ ଗୋସାଇଁ ଶୁଣନ୍ତୁ । ଝିଟିପିଟିଟା ଘୁରରୁ ଦାଲୁକରି ବାଆଁ କାନ୍ଧରେ ପଡ଼ି ବାଆଁ ହାତ ଦେଇ ତଳକୁ ଓହ୍ଲାଇ ଗଲା । ସେ ପାଖେ ଗୋଟାଏ ବିରାଡ଼ି ଶୋଇଥିଲା । ତାକୁ ଦେଖି ଭୟରେ ଝିଟିପିଟିଟି ପୁଣି ଡାହାଣ କଡ଼କୁ ପଳେଇ ଆସି କାନ୍ଥରେ ଚଢ଼ିଗଲା ।

ପଣ୍ଡିତେ ତାଙ୍କୁ ଦାଏ ମାରଦେଇ ବଲବଲେଇଲେ—ହଁ। ଅସଲ କଥାଟି ଏହିଠାରେ ଲୁକ୍‌କାୟିତ ହୋଇ ରହିଛି। ଉତ୍ପାତ ସାଗର ପୋଥିରେ—ଯଦ ନୃପତେ ପଲ୍ଲୀ ଶ୍ଳୋକଟି ଯାହା କହିଛି ତାହା ପୁସ୍ତକର ଠିକ୍ ନୁହେଁ। ଶ୍ଳୋକର ଅନ୍ୟ ଭାଗଟି ଉତ୍ପାତ ସାଗରର ପରିଶିଷ୍ଟରେ ଅଛି। ପଲ୍ଲୀ ବାମଭାଗେ ପଡ଼ି ବାମଭାଗରେ ଓହ୍ଲେଇଛି ସତ, ଏହା ଶୁଭପର ଲକ୍ଷଣ। କିନ୍ତୁ ଭଗବାନ ପଲ୍ଲୀକୁ ମହାରାଜାଙ୍କର ଅନ୍ୟାୟ କ୍ଷତି କରିବାକୁ ଛାଡ଼ିଦେଇ ନାହାନ୍ତି। ତା ଆଗରେ ଗୋଟିଏ ମାର୍ଜାରକୁ ଶୁଆଇ ଦେଇଛନ୍ତି ଆଗରୁ। ଏତଦ୍ଦ୍ୱାରା ପଲ୍ଲୀଟି ଭୟପ୍ରାପ୍ତ ହୋଇ ଡାହାଣ ଆଡ଼େ ପଳାୟନ କରିଛି। ଉତ୍ପାତ ସାଗର ପରିଶିଷ୍ଟରେ ପୂର୍ବୋକ୍ତ ଶ୍ଳୋକର ସମୁଦାୟ ଅଂଶଟି ଅଛି—ଲେଖାଅଛି—"ଯଦ ନୃପତେ ପଲ୍ଲୀ ବାମଭାଗେ ନରାଣାଂ, ଧନଧାନ୍ୟ ତସ୍ୟ ନଶ୍ୟନ୍ତି ପୁତ୍ରକଳତ୍ର ଏବ ଚ। ଯଦ୍ୟପି ବାମେ ପତିତ୍ୱା ଭୟେ ଦକ୍ଷେ ପଳାୟତି, ଶ୍ରୀବୃଦ୍ଧି ତସ୍ୟ ଭବତି ଶ୍ରାବଣେ ତଡ଼ାଗ ଯଥା। ତଦା ଦକ୍ଷ ହସ୍ତ ଯଦମ୍ ଭୃତ୍ୟ ସ୍କନ୍ଧେ ଚ ତିଷ୍ଠତି ତନ୍ନହସ୍ତ ପୁଣ୍ୟକର୍ମଂ ତ ବଳାତ୍କାରେ କରୋତି।" ଏହା କିଛି ଆମ୍ଭ ଭ୍ରମ କଥା ନୁହେଁ। ଉତ୍ପାତ ସାଗରରେ ଜଣେ ମହର୍ଷି ଏହାକୁ ଲେଖିଅଛନ୍ତି। ଅତି ଭାଗ୍ୟବାନ ଦାନଶୀଳ ପୁଣ୍ୟାତ୍ମା ନ ହେଲେ କାହାର ଭାଗ୍ୟରେ ଏପରି ଯୋଗ ଘଟେ ନାହିଁ, ଦୁର୍ଭାଗ୍ୟ ଘୋଟିବା ସମୟରେ ସ୍ୱୟଂ ଭଗବାନ ଏହାର ପ୍ରତିରୋଧ କରନ୍ତି। ଅଶେଷରୂପୀ ଭଗବାନ ମାର୍ଜାର ରୂପଧରି ଦୁର୍ଯୋଗକୁ ପ୍ରତିବିଧାନ କରନ୍ତି। ମହାରାଜ ଆପଣ ବହୁ ତପସ୍ୟା, ବହୁ ପୁଣ୍ୟ କର୍ମ କରି ଭଗବାନଙ୍କର ଏବମ୍ବିଧ କରୁଣାପ୍ରାପ୍ତ।

ମହନ୍ତ ମହାରାଜାଙ୍କ ମନରେ ପ୍ରସନ୍ନତା ଦେଖାଦେଲା। ଅତି ଆନନ୍ଦରେ ସେ ଅଧିକ ଦାନ ପୁଣ୍ୟ, ବିପ୍ରଗଣେ ଭୂରିଭୋଜନ ଆଦି ପୁଣ୍ୟକର୍ମର ବ୍ୟବସ୍ଥା କରିବାକୁ ଗୁମାସ୍ତା ଓ ଅନ୍ୟାନ୍ୟ ମଠ କର୍ମଚାରୀଙ୍କୁ ଆଦେଶ ଦେଲେ।

ମଠରୁ ପ୍ରତ୍ୟାବର୍ତ୍ତନ ପଥରେ ପ୍ରଥମ ମୂର୍ଖ ପଣ୍ଡିତ ଦ୍ୱିତୀୟ ମୂର୍ଖ ପଣ୍ଡିତଙ୍କୁ ହସି ହସି କହିଲେ—ଆହେ, ମୋ ଉତ୍ପାତ ସାଗର ପୋଥିର ପରିଶିଷ୍ଟ ଅଂଶଟି ହଜିଯାଇଥିଲା, ତେଣୁ ସେ ଅଂଶଟି ମୁଁ ଜାଣିପାରି ନଥିଲି। ଦ୍ୱିତୀୟ ପଣ୍ଡିତ ମଧ୍ୟ ହସି ହସି କହିଲେ—ମୋ ପୋଥିର ପ୍ରଥମ ଅଂଶଟିକୁ ବି ଉଇ ଖାଇ ଦେଇଅଛି। ତେଣୁ ସେ ଶ୍ଳୋକଟି ମୁଁ ମଧ୍ୟ ଜାଣି ନଥିଲି; ଆପଣଙ୍କଠାରୁ ଶୁଣି ଅବଗତ ହେଲି।

—*—

# ସମ୍ମିଳନୀ ସଫଳେର

ଦିନେ କାଳିଦାସ ନଗରର ଗଳା କବିମାନେ ଶ୍ରୀହର୍ଷ ହଲରେ ଅଶ୍ବନଦ ଏକଯୁଟ ହୋଇଗଲେ । ବନ୍ୟଜନ୍ତୁ ସଂରକ୍ଷଣ ବିଷୟରେ ଏକ ସଭା ଦିନ ଚାରିଟାରେ ହେବାର ଥିଲା । ବଣୁଆ ଅଫିସର ଆଠ ଦଶଜଣ ଆସି ବସିଲେ । ବଣୁଆ ମନ୍ତ୍ରୀ ୪ଟା ବେଳେ ଆସି ପହଞ୍ଚିବାର ଥିଲା । ସେ କୁଆଡ଼େ କର୍ମୀ, ଦକ୍ଷକର୍ମୀ ଜେଭେଜଙ୍କ ସହ ଗୋଟାଏ ବଣଭୋଜିକୁ ଚାଲିଗଲେ । ଦିନକୁ ବାହାରିଲା ବେଳକୁ ସେକ୍ରେଟେରୀ ଚେତେଇ ଦେଇଥିଲେ ଯେ ଦିନ ୪ଟାରେ ଗୋଟାଏ ମିଟିଂ ଅଛି । ବଣୁଆ ସେକ୍ରେଟେରୀଙ୍କୁ ସଭା ପରିଚାଳନା କାମଟା ତୁଲେଇ ନେବାକୁ ଆଦେଶ ଦେଇ ସେ ଚାଲିଗଲେ । ୫ଟା ବେଳେ ଶ୍ରୀହର୍ଷ ହଲରେ ଏହି ଖବରଟା ପହଞ୍ଚି ଯିବାରୁ ବଣୁଆ ଅଫିସରମାନେ ଖୁସି ହୋଇଗଲେ । ତୁଚ୍ଛାଟାରେ କିଏ ସିଧା ନଅଟାଯାଏ ବକର-ବକର ହୋଇଥାଆନ୍ତା । ମନ୍ତ୍ରୀଙ୍କୁ ସବୁବେଳେ ହଁ ସାର୍, ଆଜ୍ଞା ସାର୍, ୟେସ୍ ସାର୍ କହି କହି ପାଟିରୁ ବଚ କାଢ଼ିଥାଆନ୍ତା । ମଣିଷ ବଞ୍ଚିଲା, କିନ୍ତୁ ମନ୍ତ୍ରୀ ଯେତେବେଳେ ତାଙ୍କ ଅନୁପସ୍ଥିତିରେ ସଭାଟା କରିଦେବାକୁ ଆଦେଶ ଦେଇଛନ୍ତି, ସେତେବେଳେ ଅନ୍ତତଃ ଦଶ ପନ୍ଦର ମିନିଟ୍ ପାଇଁ ସଭାଟା କରିଦେବା ନିହାତି ଦରକାର । ବାସ୍ ସେକ୍ରେଟେରୀ ସଭାପତି ବନିଗଲେ । ବଣୁଆ ଅଫିସରମାନଙ୍କ ଭିତରୁ ଅଧେ ବକ୍ତା ଓ ଅଧେ ଶ୍ରୋତା ହୋଇ ସଭାକାମ ଅଧଘଣ୍ଟା ଭିତରେ ସାରିଦେଇ ଏବଂ ଧନ୍ୟବାଦ ଦେଇ ହଲରୁ ବାହାରିଗଲେ । ସେମାନଙ୍କର ପ୍ରସ୍ଥାନ ପରେ ପରେ ଗଳା କବିମାନେ ହଲ ଖୋଲାଥିବା ଦେଖି ପଶିଗଲେ—ଠିକ୍ ଯେମିତି ମୂଷା ଗାତ କରି ପଳେଇଲେ ସେଠି ସାପ ଯାଇ ଆରାମରେ ରହେ ।

ଗଳା କବିମାନେ ଯେତେବେଳେ ଶୁଣିଲେ ଯେ ହେବାକୁଥିବା ସଭାଟା ଗାଲ୍ଭର ପକେଇଛି, ସେତେବେଳେ ସେମାନେ ଖୁବ୍ ଖୁସି ହୋଇ ଯାଇ ସେମାନଙ୍କର ଗୋଟିଏ ସଭା କରି ଦେବାକୁ ବସିପଡ଼ିଲେ । ଜଣେ କବି ଖୁସି ମନରେ ଗୋଟିଏ କବିତା ବୋଲ୍‌ବୋଲେଇ ଉଠିଲେ । ଏକାଠି ଯାଉଥିବା ଦଳେ ଲୋକଙ୍କ ଭିତରୁ ଜଣେ ରାସ୍ତା କଡ଼ରେ ପରିସ୍ରା କରି ବସିଲେ, ଅନ୍ୟମାନଙ୍କୁ ଯେପରି ପରିସ୍ରା ତଳବ ଦେଖାଏ, ଠିକ୍ ସେହିପରି ଜଣେ କବିଙ୍କୁ କବିତା ବୋଲ୍‌ବୋଲେଇବାର ଶୁଣି ଅନ୍ୟ କବିମାନଙ୍କୁ ପ୍ରବଳ କବିତା ତଳବ ଦେଖାଇଲା । ଗୋଟାଏ ବିଲୁଆର ବୋବାଳି ସଙ୍ଗେ ଅନ୍ୟ ବିଲୁଆମାନେ ବୋବାଳି ମିଶେଇଲା ପରି ଅନ୍ୟ କବିମାନେ

ବୋବାଳିଗୁଣ୍ଡିଲେ । କିଏ ଭଞ୍ଜଙ୍କ ପେଁଏଁ କାଳି ବଜେଇଲା ତ କିଏ ବଜେଇଲା ଗଡ଼ନାୟକଙ୍କର, କିଏ ବା ସଚ୍ଚି ରାଉତରାୟଙ୍କର । ଅଧିକାଂଶ ଅଲଟ୍ରା ମଡ଼ର୍ଣ୍ଣ ପେଁଏଁ ଖାଲିରେ ହଲ୍ କମ୍ପେଇଲେ । ମୋଟ ଉପରେ ଗୋଟାଏ ହାଟୁଆ କବି ସମ୍ମିଳନୀ ବସିଗଲା । କିରୋସିନ ସରିଗଲେ ଲଣ୍ଠନଟାଏ ଯେପରି ଆସ୍ତେ ଆସ୍ତେ କମିଆସେ, କବିମାନଙ୍କର ଉଦ୍ଦୀପନା ସରିଯିବାରୁ ଗୋଳ ଆସ୍ତେ ଆସ୍ତେ କମି ଆସିଲା ।

ସବୁ ଶୂନ ପଡ଼ିଯିବା ପରେ ଜଣେ କବି କହିଲେ—"ହେ ଶୁଣ ଆମର ଗୋଟାଏ ବଡ଼ ଧରଣର କବି ସମ୍ମିଳନୀ କରିବା । ଓଡ଼ିଶାର ସବୁଆଡ଼ୁ କବିମାନଙ୍କୁ ନମିତା କରିବା ।"

ଆଉ ଜଣେ କହିଲା—"ବଢ଼ିଆ ପ୍ରସ୍ତାବଟାଏ । ଆଜିକାଲି ସମସ୍ତେ ସଙ୍ଘବଦ୍ଧ ହୋଇ ସଭା ସମିତି କରୁଛନ୍ତି । ଖାଇପିଇ, ନାଚକୁଦ ଅଭ୍ୟାସ କରୁଛନ୍ତି । ମୋଚି ଠାରୁ ଆରମ୍ଭ କରି ମାଷ୍ଟରଙ୍କ ଯାଏ ସମସ୍ତେ ସଭା ସମିତି କଲେ, ନାଚ ଗୀତରେ ସବୁଆଡ଼ କମ୍ପେଇଲେ, ଖାଇପିଇ ସବୁଆଡ଼େ ଅଇଁଠାପତ୍ର ଗଦେଇଲେ । ଆମେ କବିକୁଳ କିନ୍ତୁ କିଛି କରିପାରୁନୁ । ବାହାର ଲୋକେ ଓଲଟି ଆମକୁ ନେଇ ହୈଚୈ କରନ୍ତି, ବାହାବ୍ବା ମାରି ନଥାନ୍ତି । ଆମେ କିନ୍ତୁ ଯେଉଁ ଢିମିରେ ସେଇ ଢିମିରେ ।"

ଆଉ ଜଣେ କହିଲେ, ''ନା, ଆମେ ଅଲବତ୍ ସମ୍ମିଳନଟାଏ କରିବା, ଅନ୍ୟମାନଙ୍କଠାରୁ ଆହୁରି ବଢ଼ିଆ କରି କରିବା । ନିରୁତା କବି ସମ୍ମିଳନୀଟାଏ କଲେ ଟଙ୍କା ଅଭାବ ପଡ଼ିବନି । ଟଙ୍କା କୁଆଡ଼ୁ ଆସି ଗଦେଇ ହୋଇଯିବ ।"

ଜଣେ ଅଣ୍ଟାକରି କହିଲା—"ଆରେ, ଆମେ ସମସ୍ତେ ତ ଶୁଖା ଖଡ଼୍‌ଗଡ଼୍ । ତେଣିକି ଏମିତିଆ ବଡ଼ ବଡ଼ କଥା କହି କି ଲାଭ ? ଟଙ୍କା କେଉଁ ମେଘ ଭିତରେ ରହିଛି ? ଆମେ କବିମାନେ ଗୋଟାଏ ଗ୍ୟାସ ଭିତରକୁ ଛାଡ଼ିଦେବୁ, ଆଉ ଟଙ୍କା-ଗୁଡ଼ାକର ବର୍ଷା ହୋଇଯିବ । ଆମେ ସେଗୁଡ଼ାକ ଦ'ହାତିଆ ଗୋଟେଇ ପକେଇ ଓଳିଆ ବାନ୍ଧି ଘରେ ଥୋଇଦେବା ।"

ପୂର୍ବ ବକ୍ତା କହିଲେ—"ଆହା, ତୁମେ କଥାଟାକୁ ଧରିପାରିଲନି । ସରକାରଙ୍କ ପକେଟରେ ପ୍ରଚୁର ଟଙ୍କା ଅଛି । ଅସଲ କଥା ହେଉଛି ତାଙ୍କ ପକେଟ୍‌ରେ କେମିତି ହାତ ପୂରେଇବା, ସେଇ ହେଲା ପ୍ରଶ୍ନ ।"

"ହଁ, ଖୁବ୍ ଭଲ କଥାଟାଏ କହିଲ ଏକା । 'ପିକ୍‌ପକେଟ୍ କବି'ର ସାର୍ଟିଫିକେଟ୍ ଧରେଇ ଦେଇ ପୁଲିସ୍ ସିଧାସଳଖ ମାମୁଁ ଘରକୁ ପଠେଇ ଦେବ । ବଢ଼ିଆ ବାଟଟାଏ ଦେଖେଇ ଦେଲ !"

‘ଧେତ୍ତେରିକା, ଖମୁଆଳୁଟା ବୁଝିଲ । ମୋ କହିବାର ଅର୍ଥ ହେଲା ମନ୍ତ୍ରୀମାନଙ୍କ ମାରଫତ୍‌ରେ ବହୁତ ଅର୍ଥ ଅଛି । ସେମାନଙ୍କୁ କୌଣସି ମତେ ଖୁସ୍ କରିପାରିଲେ ସେମାନଙ୍କଠାରୁ ଯଥେଷ୍ଟ ଟଙ୍କା ମିଳିବ । ମନ୍ତ୍ରୀମାନେ କବିମାନଙ୍କୁ ଭଲପାଆନ୍ତି, କାରଣ କବିମାନେ ସେମାନଙ୍କୁ ଖୁବ୍ କମ୍ ଗାଳି ଦିଅନ୍ତି । ମନ୍ତ୍ରୀମାନେ ମଧ୍ୟ ବେଳେବେଳେ କବି ହେବାକୁ ଚେଷ୍ଟା କରନ୍ତି । କବିମାନଙ୍କ ଧାସ ଲାଗିଲେ ସହଜରେ କବି ବନିଯାଇ ପାରିବେ । ଏଇଥିଲାଗି କବିମାନଙ୍କ ସାନ୍ନିଧ୍ୟକୁ ସେମାନେ ବେଶି ପସନ୍ଦ କରନ୍ତି । ମନ୍ତ୍ରୀଙ୍କ ପୃଷ୍ଠପୋଷକତାରେ ଯଦି ଆମେ ସମ୍ମିଳନୀଟାଏ ଆରମ୍ଭ କରିଦେବା, ତେବେ ମନ୍ତ୍ରୀ ପକେଟଟାକୁ ଦେଖେଇ ଦେଇ କହିବେ—ନେ, କେତେ ଟଙ୍କା ନେଉଛୁ ନେ । ସୁତରାଂ ଟଙ୍କାଟା ବଡ଼ କଥା ନୁହେଁ । ବଡ଼ କଥା ହେଲା ସମ୍ମିଳନୀର ଆୟୋଜନ । ଛିଟିକିଆ ସମ୍ମିଳନୀରେ କାମ ଚଳିବ ନାହିଁ । କଟକ ସମ୍ମିଳନୀ କି ଭୁବନେଶ୍ୱରର ଅନାବନା ଗୋଷ୍ଠୀର ସମ୍ମିଳନୀକୁ ମନ୍ତ୍ରୀ ପସନ୍ଦ କରିବେନି । ସେ କଣ କଟକ ବା ଭୁବନେଶ୍ୱର ମନ୍ତ୍ରୀ ? ସେ ସାରା ଓଡ଼ିଶା ପାଇଁ ମନ୍ତ୍ରୀ । ନିଖିଳ ଓଡ଼ିଶା କବି ସମ୍ମିଳନୀ କଲେ ସେ ଖୁସି ହେବେ ଓ ଥଳି ଖୋଲିବେ ।”

ଶେଷରେ ନିଖିଳ ଓଡ଼ିଶା କବି ସମ୍ମିଳନୀଟାଏ ଯେ କୌଣସିମତେ କରିବାକୁ ସମସ୍ତେ ରାଜି ହୋଇଗଲେ । ସଙ୍ଗେ ସଙ୍ଗେ ସଭାପତି, କାର୍ଯ୍ୟକାରୀ ସଭାପତି, ସାଧାରଣ ସମ୍ପାଦକ, ଯୋଗାଯୋଗ ସମ୍ପାଦକ, ଜନସ୍ତାବସ୍ଥ ସମ୍ପାଦକ, ପ୍ରଚାର ସମ୍ପାଦକ, ମନ୍ତ୍ରୀ ଅନୁଧାବନ ସମ୍ପାଦକ (ମନ୍ତ୍ରୀଙ୍କ ପଛେ ପଛେ ମାସେଖଣ୍ଡେ ନ ଗୋଡ଼ାଇଲେ ସେ ଧରାଦିଅନ୍ତି ନାହିଁ । ତେଣୁ କେବଳ ତାଙ୍କର ପାଇଁ ଜଣେ ସେକ୍ରେଟେରି ଦରକାର), କବିତାପାଠ ନିୟନ୍ତ୍ରଣ ସମ୍ପାଦକ, କୋଷାଧ୍ୟକ୍ଷ ଓ ସର୍ବୋପରି ସଭା ସଫଳକାରୀ ସମ୍ପାଦକ ବା ଶେଷ ସମ୍ପାଦକ । ଏମାନଙ୍କ ଛଡ଼ା ଖିଆପିଆ ସହସମ୍ପାଦକ, ଶ୍ରୋତା ଯୋଗାଡ଼ ସହସମ୍ପାଦକ, କଳି ନିବାରଣ ସହସମ୍ପାଦକ, ଫଟୋଗ୍ରହଣ ସହସମ୍ପାଦକମାନେ ମଧ୍ୟ ନିଯୁକ୍ତିପତ୍ର ପାଇଗଲେ । ଶେଷକୁ ୪ ଜଣ ରିଜର୍ଭ ସହସମ୍ପାଦକ ମଧ୍ୟ ରହିଲେ । ଜଣେ କେହି ଯଦି ଦୁର୍ଘଟଣାଗ୍ରସ୍ତ ବା ଅସୁସ୍ଥ ହୋଇ ପଡ଼ିବ, ତେବେ ଏହିମାନଙ୍କ ଭିତରୁ ଜଣେ ସେହି ସ୍ଥାନ ପୂରଣ କରିବ ।

ସବୁ ଠିକ୍‌ଠାକ୍ ହୋଇଗଲା । କର୍ମକୁଶଳତାରେ ଅନୁଧାବନ ସମ୍ପାଦକ ସର୍ବଶ୍ରେଷ୍ଠ ଦକ୍ଷତା ଦେଖାଇଲେ । ମାତ୍ର ପନ୍ଦରଦିନରେ ସେ ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ ଓ ସାଂସ୍କୃତିକ ମନ୍ତ୍ରୀଙ୍କୁ ରାଜି କରାଇ ରେକର୍ଡ଼ ଭାଙ୍ଗିଦେଲେ । ପୂର୍ବ ରେକର୍ଡ ଥିଲା ଅଠର ଦିନ । ସରକାର କବିମାନଙ୍କ ଦୁଇଦିନ ପାଇଁ ଆଶ୍ରୟସ୍ଥଳ, ଖିଆପିଆ ଓ ସବାରୀର ଭାର ନେବେ ବୋଲି ମୁଖ୍ୟମନ୍ତ୍ରୀ ସ୍ଥିର କରିଦେବାରୁ ସମ୍ପାଦକ ଓ ସହସମ୍ପାଦକମାନେ

ତାଙ୍କ ନାଁରେ ଲିଙ୍ଗରାଜଙ୍କ ଉପରେ ବେଲପତ୍ର ଚଢ଼େଇବାକୁ ଜଣେ ପଣ୍ଡାଙ୍କୁ ଅର୍ଡର ଦେଇଦେଲେ ।

ଏହି ଯେଉଁ ଅସଲ ବଡ଼ କାମଟିକ ହୋଇଗଲା, ତା'ର ଧକ୍କାରେ ଆଉ ସବୁ କାମ ଘିଞ୍ଚି ଘିଞ୍ଚି ହୋଇ ଆଗକୁ ଗଡ଼ୁଗଡ଼ୁ କହିଲେ ଚାଲିଲା । ଅନୁଧାବନ ସମ୍ପାଦକ ଅଲିଂପିକ୍ ରେ ସ୍ୱର୍ଣ୍ଣପଦକ ପାଇଲା ପରି ଛାତି ଫୁଲେଇ ବୁଲିଲେ । ସଶଙ୍କ ହୋଇ ରହିଲେ କେବଳ ଦୁଇଜଣ ସମ୍ପାଦକ । ସେମାନେ ହେଲେ କବିତାପାଠ ନିମନ୍ତ୍ରଣ ସମ୍ପାଦକ ଓ ସଭା ସଫଳକାମୀ ସମ୍ପାଦକ । ନିମନ୍ତ୍ରଣ ସମ୍ପାଦକ କହନ୍ତି—"ମୋର ମୁଣ୍ଡରେ ଟେକ୍ସ ବସିଲା ଜାଣ । ତାଲଚେରରେ ସାର କାରଖାନା ବସିବା ଫଳରେ ଓଡ଼ିଶାରେ କବି ଉତ୍ପାଦନ ଏତେବେଶୀ ହୋଇଗଲାଣି ଯେ ତିନି ବୃହତ୍କାର ପତ୍ରିକା ବାହାର କଲେ ବି ସେମାନଙ୍କୁ ସ୍ଥାନ ଦେଇହେବନି । ସେମାନଙ୍କ ପାଖରୁ ଯେଉଁ କବିତା ସବୁ ଆସିବ ସେଥିରେ ଗୋଟିଏ ଗାଡ଼ିଆ ପୋତି ହୋଇ ପଡ଼ିବ । କବିତା ଖୁବ୍ ନେଲେ ସଭାରେ ଚାଳିଶଟି ପଢ଼ା ହୋଇପାରିବ । କାହାକୁ ବାଛିବ । ୪୦ ଜଣଙ୍କୁ ମାତ୍ର ବନ୍ଧୁ କରିବ ଓ ଦୁଷ୍ମନ କରିବ ଦୁଇ କି ତିନି ହଜାର । ସମସ୍ତେ ମତେ ଖାଇଯିବେ, କେଳେଇ ପକେଇବେ । ହେ ଭଗବାନ, ମୋତେ ରକ୍ଷାକର ।"

ସଭା ସଫଳକାମୀ ସମ୍ପାଦକ ମଧ୍ୟ କପାଳରେ କର ତାଡ଼ି କହିଲେ, "ସେଥିରେ ତୁମର ବିବ୍ରତ ହେବା ଦରକାର ନାହିଁ । ୪୦ଟି କବିତା ଉପରେ ଥୋଇ ଦେବ । ଚାରି ଘଣ୍ଟା ପରେ ଖିଆପିଆ ଲାଗି ସଭା ବନ୍ଦ ହେଲା ବୋଲି ଘୋଷଣା କରିଦେବ । ସମସ୍ତେ ଉଠି ପଳେଇବେ । ପଢ଼ା ନ ହୋଇଥିବା କବିତାର କବିମାନେ ମଧ୍ୟ ମନେ ମନେ ଭିଡ଼ ଜମେଇବା ଅନ୍ୟ କବିମାନଙ୍କୁ ଗାଳିଗୁଲଜ କରି ପଳେଇବେ । ସେତେବେଳକୁ ସେମାନଙ୍କର ପେଟ ମଧ୍ୟ ଭୋକରେ କଅଁ କଅଁ ଡାକୁଥିବ । ଭୋକ ହେଲେ କବିତା ଫବିତା ପଶୁରେ କିଏ ? ସବୁଯାକ କବି ନିଜ ଛଡ଼ା ଅନ୍ୟ ସମସ୍ତଙ୍କୁ ତେଲୁଣୀପୋକ ସନ୍ତାନ କହି ସେମାନଙ୍କ ଉଦ୍ଦେଶ୍ୟରେ ଅଶ୍ଳୀଳ, ଅବୈଧାନିକ ଓ ଅରୁଚିକର ବାକ୍ୟ ସବୁ ପ୍ରୟୋଗ କରିବେ । ତୁମର କିଛି ହେବ ନାହିଁ । ତୁମେ ତାଙ୍କ କବିତା ବାଦ ଦେଇଛ କି ରଖିଛ ସେ କଥା ବାଏଁ ବାଏଁ ଉଡ଼ିଯିବ ।

ସମସ୍ୟା ହେଉଛି ମୋର । ତା' ଭିତରେ ଅଧିକାଂଶ କବିତା ଥିବ ଆଧୁନିକ—ଦୁର୍ବୋଧ୍ୟ । ଆଜିକାଲି ତ ଯୋଗ୍ୟତାକୁ କେହି ପଚାରୁ ନାହାନ୍ତି । କବିତା ପାଠବେଳେ ଯଦି କେହି ଏ କବିତାକୁ ଶବ୍ଦ ମନୋଜ୍ଞବାଧକ କ୍ଷିପ୍ତତା ଦୂର୍ ଦୂର୍ କରିଦିଏ ତେବେ ତ ପାଠୋତ୍ସବ ଭଣ୍ଡୁର ହୋଇଯିବ । ମୋ ପଦଟି ଯେ କେବଳ ସଭା ନିଷ୍ଫଳକାମୀ

ସମ୍ପାଦକ ହେବ ତାହା ନୁହେଁ, ସବୁ ଦୋଷତକ ମୋର ମୁଣ୍ଡରେ ଲଦା ହେବ । କବିଯାକ ମୋ ବେକରେ ଦାନ୍ତ ଲଗେଇ ଦେବେ ।

ଏହିସବୁ କାରଣ ଯୋଗୁ ସେ ନିଜ ପଦବୀରୁ ଇସ୍ତଫା ଦେବାକୁ ଚାହିଁଲାରୁ ୧ନ ନମ୍ବର ଜେନର୍ଲ ସମ୍ପାଦକ ତାଙ୍କୁ ପ୍ରବୋଧ ଦେଇ କହିଲେ, "ମାଭୈଃ । ମୁଁ ସମ୍ଭାଳି ନେବି । ତୁମର ଇସ୍ତଫା ଦେବା ଦରକାର ନାହିଁ । ଅଧିକ କିଛି ପଇସା ଖର୍ଚ୍ଚ ହୋଇଯିବ ।"

ସଫଳର ସମ୍ପାଦକ କହିଲେ, "ସେଥିପାଇଁ ଚିନ୍ତା ନାହିଁ । ଯାହା ଖର୍ଚ୍ଚ ହେବ ମୁଁ ଯୋଗେଇ ଦେବି । ମୋ ବିଭାଗଟା ସବୁଠୁ ବେଶି ଗୁରୁତ୍ୱପୂର୍ଣ୍ଣ । ସବୁ ବିଭାଗରୁ କଟାକଟି କରି ମୋ ବିଭାଗକୁ ଅଧିକା ଆଣିବ । କେହି ଅମଙ୍ଗ ହେଲେ ସାଫ୍ ସାଫ୍ କହିଦେବ, ଦେଖ କବିତା ପାଠ ବ୍ୟବସ୍ଥାଟା ଯଦି ଭଣ୍ଡୁର ହୁଏ ତେବେ ତୁମେ ଦାୟୀ ହେବ, ମୁଁ ନୁହେଁ । କବି ସମ୍ମିଳନୀରେ କବିତାପାଠ ଭଣ୍ଡୁର ହେବା ଅର୍ଥ ସମସ୍ତ ସମ୍ମିଳନୀରେ ନାଲିବତୀ ଜଳିବ । ଏହା କରିବାକୁ କେହି ଇଚ୍ଛା କରିବେ ନାହିଁ । ତେଣୁ ଯଥେଷ୍ଟ ଟଙ୍କା ମିଳିବ । ତୁମେ ତୁମ କାମରେ ଆଗେଇ ଯାଅ ।"

ଜେନର୍ଲ ସମ୍ପାଦକ କାମରେ ଆଗେଇ ଗଲେ । ମଝିରେ ମଝିରେ ସଫଳଆ ସମ୍ପାଦକ ଜେନର୍ଲଙ୍କୁ କଅଣ କଅଣ କଲି ବୋଲି ପଚାରିବାରୁ ସେ ଧମକେଇ ଦେଲି —"ଦେଖ, ତୁମେ ଏମିତି ବାଟ ଓଗାଳା କାମ କଲେ ମୁଁ କିଛି ବୁଝିବିନି, ତୁମେ ସବୁ କର ।" ତାପରେ ଏଥିରେ ସେ ଚୁପ୍ ରହିଲେ । ଜେନର୍ଲଙ୍କ ସବୁ ଖର୍ଚ୍ଚବାର୍ଚ୍ଚ ହିସାବ ସମ୍ମିଳନୀ ପରେ ବୁଝେଇ ଦେବେ ବୋଲି କହି ଅଧିକରୁ ଅଧିକ ଜୋର୍‌ରେ କାମକରି ଲାଗିଲେ । ସଫଳଆ ବି ଟଙ୍କା ମୁଣିର ମୁହଁ ମେଲି କରିଦେଲା ।

କାମ କରେଇବା ଲୋକ ଠିକ୍ ଥିଲେ ସବୁ କାମ ଠିକ୍ ଠିକ୍ ହୋଇଥାଏ । ସମ୍ମିଳନୀରେ କର୍ମକର୍ତ୍ତାମାନେ ଯଥେଷ୍ଟ ସଂଖ୍ୟାରେ ଥିଲେ । ସୁତରାଂ ପ୍ରାକ୍-ସମ୍ମିଳନୀର କାର୍ଯ୍ୟଗୁଡ଼ାକ ଘଣ୍ଟା କଣ୍ଟାପରି ଆଗଉଥାଏ ।

ପହିଲିଦିନ ଆନୁଷ୍ଠାନିକ କାମ, ସେଥିରେ ବେଶି କିଛି ଗୁରୁତ୍ୱପୂର୍ଣ୍ଣ କାମ ନଥିଲା । ଅସଲ ଗୁରୁତ୍ୱପୂର୍ଣ୍ଣ କାମ ଥିଲା ଭୋଜି । ମୁଖ୍ୟମନ୍ତ୍ରୀ ଯେଉଁଠି ଭୋଜି ଦେବେ ସେଠି ଆଉ କିଛି ବାକି ରହିବନି ! ଖାଇ ଖାଇ କବିମାନେ ଗଳିଆ ହୋଇଗଲେ । କେତେ କବିଙ୍କର ପଛ ଗେଟ୍ ଖୋଲିଗଲା । ମନ୍ତ୍ରିମାନଙ୍କର ଭାଷଣ ଶେଷ ହେବା ସଙ୍ଗେ ସଙ୍ଗେ ସେ ଦିନର ସଭା ସରିଗଲା ।

ପରଦିନ କବିତା ପାଠୋତ୍ସବ । ଅସୁମାରି କବିଙ୍କ ଦେହ ମନ ଉଷୁମ ହୋଇ ଉଠିଲା । ରାତିରେ କବିମାନେ କବିତାର ଦଣ୍ଡବୈଠକୀ ମାରିବାକୁ ଲାଗିଲେ । କିଏ କବିତାପାଠ ପୂର୍ବରୁ କିଅଣ କହିବ, କେତେ ବେଗରେ ପଢ଼ିବ ତା'ର ଠିକ୍ ଠିକଣାରେ ଲାଗିପଡ଼ିଲେ । ଗାଉଡ଼ିକିଆକ କବି ଗୋଟାଏ ଥାନରେ ଥିଲେ । ସମସ୍ତେ ପଠନାଭ୍ୟାସରେ ଲିପ୍ତ ରହିଲାରୁ କୁଆ ବସାରେ ଢେମଣା ପଶିବାର ପରିସ୍ଥିତି ସୃଷ୍ଟି ହେଲା । ସେ ଯାହାହେଉ ଉଣାଅଧିକେ ସମସ୍ତେ କବିତାପାଠ କଳାଟିକୁ କିଛି କିଛି ସାଧି ପକେଇଲେ । ଉତ୍କଣ୍ଠା, ଉଦ୍‌ବେଗ ଓ ଆଶଙ୍କା ଭିତରେ କବିମାନଙ୍କର ରାତି ପାହିଲା । ଦୁଇଟାରେ ପାଠୋତ୍ସବ ଆରମ୍ଭ, ହେଲେ ପାଠ କରିବା କବିମାନେ ଦିନ ବାରଟାରେ ମଣ୍ଡପରେ ଭିଡ଼ ଜମେଇ ଦେଲେ । ରିଜର୍ଭ ସମ୍ପାଦକ ଜଣେ ବନେଇଚୁନେଇ କହିଲାବାଲାଙ୍କୁ ପରିଚାଳନା କରିବାଲାଗି ଠିକ୍ କରି ଦେଇଥାନ୍ତି । ଅରମ୍ଭଟା ଯାହାର ମାଡ଼ିବସିଆ ହୁଏ, ତା'ର ସବୁକିଛି ଝୁଣ୍ଟାଝୁଣ୍ଟି ଲୁଚିଯାଏ । ପରିଚାଳକ ଦ୍ୱାରା କେବଳ ଅର୍ଦ୍ଧ ସଫଳତା ଅନ୍ତିମ ସ୍ୱରୂପ ମିଳିଥାଏ ।

ପ୍ରଥମ କବିଙ୍କୁ ଡାକିବାକୁ ଯାଇ ପରିଚାଳକ ଏକେକାର ବଢ଼ିଆ ସାହିତ୍ୟ ସୃଷ୍ଟି କରିଦେଲେ । କବିଙ୍କୁ ଚିହ୍ନିଥାଆନ୍ତୁ ବା, ନ ଥାନ୍ତୁ ତାଙ୍କର କବିତ୍ୱ ଦକ୍ଷତା ତାଙ୍କ ପାରିଧାର୍ଣ୍ଣିର କବିତ୍ୱ, ତାଙ୍କ ବଂଶରେ କବିତ୍ୱ, ଓଳିଆରୁ ପଡ଼ି ସେ କେମିତି ରାଜାକବି ହେଲେ, ତାଙ୍କ ସ୍କୁଲଚଲଣିରେ କିପରି କବିତ୍ୱ ଫୁଟିଛି ଏବଂ ଏବେ ସେ କିପରି ଏକ ଯୁଗାନ୍ତକାରୀ କବିତା ପରିବେଷଣ କରି ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିବେ ତାର ଏକ ଓଜସ୍ୱିନୀ ଭାଷଣ ଦେଲେ । ଏକନମ୍ବର କବି ମଞ୍ଚକୁ ଉଠିଲାବେଳେ ଜଣେ ଦି ଜଣ ତାଳି ଆରମ୍ଭ କରୁଥିଲେ । ରିଜର୍ଭ ସମ୍ପାଦକ 'ଆ-ବେ' ବୋଲି କହି ଗାରଡ଼େଇ ଚାହିଁବାରୁ ତାଳିଟା ବନ୍ଦ ହୋଇଗଲା । କବି କାଗଜଟା ଧରି ଆରମ୍ଭ କଲେ "ଏବଂ କିନ୍ତୁ ଅପଣ —" ଠିକ୍ ଏତିକବେଳେ ରିଜର୍ଭ ସମ୍ପାଦକ 'ହୁ' ଶବ୍ଦଟିଏ କହିଲେ । ସଙ୍ଗେ ସଙ୍ଗେ ତାଳିର ଲହଡ଼ା ଘରଟାକୁ କମ୍ପେଇ ଦେଲା । ତାଳି ବନ୍ଦ ହେବାକୁ ପୂରା ଦୁଇମିନଟ୍ ଲାଗିଗଲା । କବି ପୁଣି ବୋଲିଲେ "ଅବଶ୍ୟ ଗହମ କ୍ଷେତ—" । ରିଜର୍ଭ ସେକ୍ରେଟେରୀ ଅନୁଚ 'ସୁଁ' ଶବ୍ଦଟିଏ କରିଦେଲେ । ସଙ୍ଗେ ସଙ୍ଗେ ଶ୍ରୋତାଙ୍କ ଭିତରୁ ଓ୍ୱା, ଓ୍ୱା ବହୁତ ଆଚ୍ଛା ବହୁତ ଆଚ୍ଛା, କମାଲ୍ କିୟା ଭଳି ଆଦି ଧ୍ୱନି ପୁଣି ଦୁଇମିନଟ୍ ଯାଏ ଘରକୁ ଥରେଇଦେଲା । ଜଣେ ଫଟୋଗ୍ରାଫର ଖଚ ଖଚ୍ କରି ଫ୍ଲାସ୍ ଲାଇଟ୍ ପକାଇ ଦୁଇଟା ଫଟୋ ନେଇଗଲା । କେତେକ ଶ୍ରୋତା ମନେମନେ ଭାବିଲେ, ଏହା ନିଶ୍ଚୟ ଅତି ଉଚ୍ଚଧରଣର କବିତା । କବିତା ନିଶ୍ଚୟ କିଛିଟା ଆଗେଇ ଗଲାଣି । ସେମାନେ ନିଜେ କିନ୍ତୁ ବହୁତ ପଛରେ ପଡ଼ିଗଲେଣି । ଏତେ ଲୋକ କବିତାର ମର୍ମ ବୁଝିପାରୁଛନ୍ତି;କିନ୍ତୁ ହାୟ ସେମାନଙ୍କର ବୋଧ।

ମୁଣ୍ଡରେ କିଛି ପଶୁନାହିଁ । ସେମାନେ ନିଜକୁ ଧିକ୍କାର କରିବାକୁ ଲାଗିଲେ । ୫୦ ନମ୍ବର କବିଯାଏ ଏହିପରି ଧ୍ୱନି, ତାଳି ଓ ଫ୍ଲାସ୍ ଲାଇଟ୍ ଫଟୋର ସୁଅ ଛୁଟିଲା । ତା’ପରେ ତାଳିଆମାନଙ୍କର ତାଳିର ଉଗ୍ରତା କମି ଆସିଲା । ଉତ୍ସାହଦାତାମାନଙ୍କର ଧ୍ୱନି ମଧ୍ୟ ଗଦଗଦା ଧରିଲା । ରାତି ୯ଟା ବେଳକୁ କବିତା ପାଠୋତ୍ସବ ଶେଷ ହେଲା । ବହୁଶ୍ରୋତା ପାଠୋତ୍ସବର ଭୂୟସୀ ପ୍ରଶଂସା କରି, ଅଳ୍ପ କେତେଜଣ ନିଜର ସ୍ୱଳ୍ପଜ୍ଞାନ ଲାଗି ମନେ ମନେ ଅବଶୋଷ କରି ଚାଲିଗଲେ । ଆଉ ଦଳେ ରିଜର୍ଭ ସମ୍ପାଦକଙ୍କ ସାଙ୍ଗେ ଝିଙ୍କାଝିଙ୍କ୍ କଳି ଲଗେଇଲେ । ରିଜର୍ଭ ସମ୍ପାଦକ ରାଗିଯାଇ କହିଲେ —“ପୁରା ମଜୁରି ମୁଁ କେବେହେଲେ ଦେବିନି । ୫୦ ଜଣ କବିଙ୍କ ପରେ ତୁମେମାନେ ଆଣ୍ଠେଇ ପଡ଼ିଲ କାହିଁକି ? ଶେଷଆଡ଼କୁ ତାଳି ବନ୍ଦ କରିଦେଲ । କବିମାନେ ସେମିତି ଗାଁ ଗାଁ ହୋଇ ତୁନି ପଡ଼ିଗଲେ । ମୁଁ ପୁରା ଟଙ୍କା ଦେବ କିଆଁ ?

“ତୁମେ ଆଗରୁ ଜଣେଇ ଦେଲନି ଯେ ତୁମର ୮୪ ଜଣ କବି କବିତା ପଢ଼ିବେ । ଆମେ ଆମ କବିଙ୍କ ପାଇଁ ତାଳି ମାରି ନଥାନ୍ତୁ । ହେଇ ଦେଖ ଆମ ପାପୁଲି-ଗୁଡ଼ାକ କେମିତି ବେଙ୍ଗ ପରି ଫୁଲିଯାଇଛି । ହେଇ ଦେଖ, ସେମାନଙ୍କର ପାପୁଲି କେମିତି ରକ୍ତବୁହା ହୋଇଯାଇଛି ।”

ସାଧାରଣ ସମ୍ପାଦକ ଦଉଡ଼ି ଆସି କଳିଗୋଳ ରୋକି ଦେଲେ । ଲୋକେ ଯଦି କଥାଟା ଜାଣିଯିବେ, ତେବେ ଭାରି ନାହନା କଥାଟାଏ ହୋଇଯିବ । ତାଳିବାଲା ଓ ଧ୍ୱନିବାଲାଙ୍କୁ ସେମାନଙ୍କର ପୁରା ପାଉଣା ଦେଇ ବିଦାୟ କରିଦେଲେ । ସେମାନେ ଚାଲିଯିବା ପରେ ସେ ସଫଳିଆ ଓ ରିଜର୍ଭ ସମ୍ପାଦକଙ୍କୁ କହିଲେ—“ତୁମକୁ ଏତେ ଗୁଡ଼ାଏ ଫଟୋ ନେବାକୁ କିଏ କହିଲା । ମୁଁ ଅନ୍ଦାଜ କରୁଛି ଦୁଇଶହରୁ କମ୍ ଫଟୋ ନିଆଯାଇନି । ଏତେ ପଇସା ଦବ କିଏ ?’

“ସେଥିପାଇଁ ଚିନ୍ତା କରନା । ଫଟୋଗ୍ରାଫର୍ ମୋ ଆଦେଶ ଅନୁଯାୟୀ ଖାଲି ଫ୍ଲାସ୍ ଜଳେଇଛି । ଗୋଟିଏ ହେଲେ ଫଟୋ ଉଠେଇନି । ଫ୍ଲାସ୍ ପାଇଁ ମଧ୍ୟ ପଇସା ପଡ଼ୁନି, ତାହା ଲୋକ ସମ୍ପର୍କବିଭାଗରୁ ମୁଖ୍ୟମନ୍ତ୍ରୀଙ୍କ ଆଦେଶକ୍ରମେ ମୁଁ ନେଇ ଆସିଥିଲି । ସେଥିପାଇଁ ଟଙ୍କାର ପ୍ରଶ୍ନ ଉଠିବନି । ତୁମେ ନିଶ୍ଚିନ୍ତ ରୁହ ।”

“ଯଦି କବିମାନେ ପଇସା ଦେଇ ସେମାନଙ୍କର ଗୋଟିଏ ଗୋଟିଏ ଫଟୋ ଚାହାଁନ୍ତି···?”

"ଫଟୋ ସାଧାରଣତଃ କେହି ସ୍ୱହାନ୍ତି ନାହିଁ । କିଏ ଫଟୋ ଉଠେଇଲା, କାହାପାଇଁ ଉଠେଇଲା ତାହା ସେମାନେ ଜାଣିବେ କେମିତି ଯେ ଫଟୋ ମାଗିବେ ? ସତେ ଓ'ଦନ ପରେ କିଏ କେଉଁଠି ଓ ଫଟୋଗ୍ରାଫର କେଉଁଠି ତାହା କିଏ ଜାଣିବ ! ଯଦି କଦାଚିତ କେହି ଚନ୍ଦ୍ରା ଲୋକ କବିତା ହାବୁଡ଼ି ଯାଇ ମାଗିବ, ତେବେ ଟିକିଏ ଦୁଃଖ ଜଣାଇ କହି ଦେବାକୁ ହେବ—ବଡ଼ ଅବଶୋଷ, ସେହି ଫଟୋଟି ନଷ୍ଟ ହୋଇଗଲା ।"

ସବୁ ସମ୍ପାଦକ ଓ ସହ ସମ୍ପାଦକ, ସଫଳଥା ଓ ଶଜର୍ଭ ସମ୍ପାଦକଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରି କହିଲେ—"ବାସ୍ତବିକ୍ ତୁମ ବୁଦ୍ଧିଙ୍କ ଯୋଗୁ କବିତା ପାଠୋତ୍ସବ ସଫଳ ହେବାକୁ ବାଧ୍ୟ ହେଲା । ତା ଛଡ଼ା ତାର ଅନ୍ୟ ଗତି ନ ଥିଲା ।"



# ସାହିତ୍ୟ କିଆରିରେ ଡାକ୍ତର

ଅବସରପ୍ରାପ୍ତ ଅଧ୍ୟାପକମାନେ ଥରେ ଏକ ସଭାରେ ଏକଜୁଟ୍ ହେଲେ । ଜଣେ କହିଲେ—ସାହିତ୍ୟ, ବିଜ୍ଞାନ, ଅର୍ଥନୀତି ଓ ରାଜନୀତି ମନ୍ଥିବା ଆମର ପେଶା ଥିଲା । ଏବେ ତାହା ସବୁ ବନ୍ଦ ହୋଇଗଲା । ଆମ ଭିତରୁ କେହି କେହି ପେନ୍‌ସନ ପାଇଲେ କେହି କେହି ମୋଟା ବକ୍‌ସିସ୍ ବା ଗ୍ରାଚୁଇଟି ପାଇଲେ । ଚାକିରି ଥିଲାବେଳେ ନିତି ଶ୍ରେଣୀରେ ବକର୍ ବକର୍ ହେଉଥିଲୁ । ଗୁଣ୍ଡଗଲୁ ମନଇଚ୍ଛା ମାରୁଥିଲୁ ଆଉ ସେଥିଲାଗି ଇନାମ୍ ମଧ୍ୟ ପାଉଥିଲୁ । ନିତି ବକର୍ ବକର୍ ହେବା ଫଳରେ ସବୁ କିଛି ହଜମ ହୋଇଯାଉଥିଲା । ଆମେ ସୁସ୍ଥ ରହୁଥିଲୁ । ଏବେ ଆମର ଅବସ୍ଥା ତ ଖରାପ ହୋଇଗଲା । ଅଧା ଦରମା ବା ଅରଜିଆ ବକ୍‌ସିସ୍‌ରେ କଅଣ ଆମର ସବୁ ସମସ୍ୟା ସମାଧାନ ହୋଇଯିବ ? ହଁ, ପେଟରୋଗରୁ ସିନା ତୃପ୍ତି ପାଇଯିବୁ; କିନ୍ତୁ, ମାନସିକ କ୍ଷୁଧାର ତୃପ୍ତି ମିଳିବ କୁଆଡ଼ୁ ? ଆଜି ଏତେ ପାଠ ପିଲାଙ୍କ ମୁଣ୍ଡରେ ଭର୍ତ୍ତି କରିଦେଇ ଆସିଲୁ, ଏ ତୃପ୍ତିଟା ଆଉ କୁଆଡ଼ୁ ପାଇବୁ ? ସବୁ ଗଲା ଗାଧୋଇ, ଗୁଣ୍ଡ ଗଲୁଟା ମାରିବୁ କେମିତି ?

ଆଉ ଜଣେ କହିଲେ—ହଁ ହଁ, ଠିକ୍ କଥା କହୁଛ । ଆମକୁ ଆଜିକାଲି ସଭା ସମିତିକୁ ବି କେହି ଡାକୁନାହାନ୍ତି । ନିତି ନିତି ଯାହା ଗୋଟିଏ ଲେଖାଏଁ ସଭାରେ ବକ୍ତୃତା ଦେବାକୁ ଡକାଯାଉଥିଲା ସେଥିରେ ଯେତିକି ଗୁଣ୍ଡ ଗଲୁ ମାରି ହୋଇ-ପାରୁଥିଲା । କିନ୍ତୁ ସଭାବାଲାଏ ଆମକୁ ନ ଡାକି ଯେଉଁ ନୂଆ ଅଧ୍ୟାପକମାନେ ଆମ ଆସନରେ ନିଯୁକ୍ତ ହୋଇଛନ୍ତି ସେହିମାନଙ୍କୁ ଡାକୁଛନ୍ତି । ଥରେ ମୁଁ ଜଣେ ସଭାବାଲାଙ୍କୁ ଚନ୍ଦା ନ ଦେଇ ପଚାରିଲି—ହଇ ହୋ, ତମେ ସେ ଅବସରପ୍ରାପ୍ତ ଅଧ୍ୟାପକମାନଙ୍କୁ ନଡାକି ନୂଆ ଅଧ୍ୟାପକମାନଙ୍କୁ ଡାକୁଛ କାହିଁ ? ସେ ଖୋଲ୍‌ଖୋଲ୍ ଉତ୍ତର ଦେଲେ—ସେ ବୁଢ଼ାବୁଢ଼ାଙ୍କୁ ଡାକେ କିଏ ! ବୁଢ଼ା ବଳଦକୁ ଦାନା ନ ଦେଇ ନଡ଼ା ଖୁଆଏ ଦଉଆଯାଏ; କାରଣ ସେ ଆଉ କାମ କରିପାରିବନି । ବୁଢ଼ା ଅଧ୍ୟାପକମାନେ ଠିକ୍ ସେହିପରି କାମ କରି ପାରିବେନି ବୋଲି ସରକାର ସେମାନଙ୍କୁ ପେନ୍‌ସନ୍ ଦେଇ କାମରୁ ଛଟେଇ କରିଦେଲେ । ଯିଏ ଶ୍ରେଣୀରେ ବକର୍ ବକର୍ ହେବେ ନାହିଁ ବୋଲି ପରନ୍ତୁକ ହେଲେ ଆମେ ତାଙ୍କୁ ସଭାକୁ ଡାକିବୁ କେମିତି ? ଆଉ ବି ନୂଆ-ମାନଙ୍କୁ ଡାକିଲେ ସେମାନଙ୍କ ଛାତ୍ରମାନେ ସାର୍ କେମିତି ବକ୍ତୃତା ଦେଉଛନ୍ତି ବା ନୂଆକଥା କହୁଛନ୍ତି ଶୁଣିବାକୁ ଆସିବେ । ଗହଳରେ ପୂର୍ଣ୍ଣ ହୋଇଯିବ । ବୁଢ଼ାବୁଢ଼ାଙ୍କୁ

ଡାକିଲେ ସେତିକି ହେବନି । ସେମାନଙ୍କୁ ପୁଣି ଗାଡ଼ିରେ ଆଣ, ଗାଡ଼ିରେ ଗୁଡ଼, ଏତେ ଝିଅଟିରେ ପଡ଼େ କିଏ ?

ଆଉ ଜଣେ କହିଲେ—ମୁଁ ଥରେ ଜଣେ ସାଧୁବାବାଙ୍କୁ କହିଲି, ଆରେ ଜ୍ଞାନର ଯେତେବେଳେ ପରିପକ୍ୱତା ଆସେ ସେତେବେଳେ ତାର ନିଶାଣ ସ୍ୱରୂପ ମୁଣ୍ଡବାଳ ସବୁ ଶ୍ୱେତବର୍ଣ୍ଣ ଧାରଣ କରେ । ଶ୍ୱେତକେଶ ପରିପକ୍ୱ ଜ୍ଞାନର ଲକ୍ଷଣ । ସେ ଓଲଟା କହିଲା—କଖାରୁ ଗଛ ଦେଖିଛ ? ଗୋଟାଏ ଗୋଟାଏ ଗଛ ସାହାବ ପାଲଟିଯାଏ । କୃଷି ବିଜ୍ଞାନୀମାନେ କହନ୍ତି ଗଛ ମୂଳରେ ଉପଯୁକ୍ତ ସାର ଅଭାବରେ ଗଛ ଦୁର୍ବଳ ହୋଇଯାଏ । ତାର ପ୍ରତିରୋଧ ଶକ୍ତି କମିଯାଏ । ତେଣୁ ସେ ଭାଇରସ୍ ରୋଗରେ ଆକ୍ରାନ୍ତ ହୋଇ ଧଳା ପଡ଼ିଯାଏ । ଚାଷୀ ସେ କଖାରୁ ଗଛକୁ ଉପାଡ଼ି ଦେଇ ବୁଲା ଷଣ୍ଢ ଆଗରେ ପକାଇ ଦିଏ । ମଣିଷ ମୁଣ୍ଡରେ ସେମିତି ଜ୍ଞାନ କମିଗଲେ ସେଇଠୁ ବାହାରିଥିବା ବାଳଗୁଡ଼ିକ ଧଳା ହୋଇଯାଏ । ଜ୍ଞାନର ପରିପକ୍ୱତା ଅର୍ଥ କଅଣ ? ସେହିଠାରୁ ଜ୍ଞାନ ବରଂ କମିବ, ବଢ଼ିବ ନାହିଁ । ପାଚିଲାମୁଣ୍ଡିଆଙ୍କୁ ସାବଧାନ । ବାସ୍ ମୋ ମନ ଆମୂଳ ଛୁଟି ଦେଲା । ତା ସାଙ୍ଗରେ ଆଉ ବେଶି କଥାବାର୍ତ୍ତା ହେଲାନି ।

ଆଉ ଜଣେ କହିଲେ—ଦୁଃଖ ନ ଡାକନ୍ତୁ ହୋ, ସତେ ସେମିତି ଆମର ସବୁ ଅଟେଇ ପଡ଼ିବ; ବରଂ ଆମେ ସମସ୍ତେ ଏମିତିଆ ଏକ ବେଉସା କରିବା ଯେଉଁଥିରେ କି ବେଶି ପରିଶ୍ରମ ପଡ଼ିବନି, ଉଚ୍ଚ ଋଣ ଗଲୁ ମାରିଦେବ । ପାନଟିଆ ଖର୍ଚ୍ଚଟା ଉଠିଯିବ, ବାସ୍ ମନଟା ତୃପ୍ତି ହୋଇଯିବ । ଏ ଗୋଦାମ ଝାଡ଼ୁ ସଭ୍ୟବାଳଙ୍କ ପର୍ବ୍‌ର କି ହୋ ।

କଥାଟା ସମସ୍ତଙ୍କ ମନକୁ ପାଇଲା । ବକ୍ତାଙ୍କୁ ବଧେଇ ବି ମିଳିଗଲା । ସମସ୍ତେ ବେଉସା ଉଣ୍ଡାଳିବାରେ ଲାଗିପଡ଼ିଲେ ।

ଜଣେ କହିଲେ ମାବୁଅଞ୍ଚ ପିଲାଙ୍କୁ ଟିଉସନ କରିବା । କାହାରି ପସନ୍ଦକୁ ଆସିଲା ନାହିଁ । ଜଣେ କହିଲେ ନାହିଁ ନାହିଁ ସେ ଅଡ଼ୁଆରେ ପଶିବା ନାହିଁ । ସେ ପିଲା ଫେଲ୍ ହେଲେ ତା ବାପାକୁ କହିବ ସାର୍ ଭଲ ପଢ଼େଇଲେ ନାହିଁ । ପରୀକ୍ଷା ଶେଷରେ ଆସି କହିବ—ସାର୍, ଅମୁକଙ୍କ ପାଖରେ ଖାତା ପଡ଼ିଛି । ଟିକିଏ ତାଙ୍କୁ କହନ୍ତୁ ନମ୍ବର ବଢ଼େଇ ଦେଇ ମୋତେ ଶ୍ରେଣୀଭୁକ୍ତ କରିଦେବେ । ଏ ଗୁଡ଼ାକ କିଏ କରିବ । ଯିଏ ପାଠ ସାଧାମତ ପଢ଼ି ଭଲ ଲେଖିଥିବ ତା ପ୍ରତି ଅନ୍ୟାୟ କରାହେବ ନାହିଁ କି ? ପୁଅର ଅର୍ଦ୍ଧଳ ପରି ବେଳେବେଳେ ଏମିତିଆ କାମ ବାଧ୍ୟ ହୋଇ କରିବାକୁ ପଡ଼ିବ, ଆଉ ଗୁଡ଼ାଏ ପାପ ଅର୍ଜିବାକୁ ହେବ ।

ଜଣେ ଅଧେ ଧଳାବାଳୁଆ ଅଧ୍ୟାପକ କଅଣ ଏ ବେଉସା କରୁନାହାନ୍ତି ? କିନ୍ତୁ ତାଙ୍କ ପଛରେ କେତେକ ଲୋକ ଥଟ୍ଟା କରୁଛନ୍ତି—ଦେଖ ହୋ ପାଠବେପାରୀ ତରକୁ

ବଢ଼କର ଧରି ପାଠ ବଢ଼ୁଛି । ପଇସାଟାଏ କମ୍ ହୋଇଗଲେ ପଇସାକର ପାଠ କମ୍ କରିଦେଉଛୁ । ଏ ପ୍ରସ୍ତାବଟା ସର୍ବସମ୍ମତିକ୍ରମେ କାଟ ଖାଇଗଲା ।

ଆଉ ଜଣେ କହିଲେ—ଚାହା ଦୋକାନ କରିବା । ସମସ୍ତେ ପାଟି କରି ଉଠିଲେ ନାହିଁ ନାହିଁ । ସେଥିରେ ପରିଶ୍ରମ ବହୁତ ବେଶି । ହେଡ୍ ମାଷ୍ଟର, ଅଧ୍ୟାପକ ଓ ଅଧ୍ୟକ୍ଷଙ୍କୁ ଚେଲେ ମାରି ମାରି ପାଉଁଲରେ ଫୋଟକା ହେବ । ଆଧୁନିକ କବିମାନଙ୍କୁ ସମ୍ଭାଳି ହେବନି । ସରକାରୀ ଚାହା ବଗିଚାଙ୍କୁ ଅଟରେ ଖୋସାମତ । ସେ ସବୁ ବେପାର କରି ହେବ ନାହିଁ । ସେଥିରେ ଇଜ୍ଜତ୍ ମହତ ଯିବ ।

ଶେଷରେ ଆଉ ଜଣେ କହିଲେ—ସ୍କୁଲ ସମସ୍ତେ ହୋମିଓପାଥି ଚିକିତ୍ସା ବ୍ୟବସାୟ କରିବା । ଖଣ୍ଡିଏ ବହି ଗୋଟିଏ ଔଷଧ ବାକ୍ସରେ ନେଇ ଉହା ଆରମ୍ଭ କରିଦେବା । ଏଥିରେ ଲୋକସେବା ହେବ । ଦରିଦ୍ରମାନଙ୍କର ଉପକାର କରି ହେବ । ରୋଗୀର ଉପକାର ହେଉ ନହେଉ ଅପକାର ହେବନି, ଠିକ ଠିକ ଔଷଧ । ଅଳ୍ପ ସ୍ଥାନରେ ବହୁତ ଔଷଧ ରହିଯିବ । ଆଉ ଅଧିକ କ ଦରକାର । ରୋଗୀଟିଏ ଆସିଲେ ପ୍ରଥମେ ତାଙ୍କୁ ହୋମିଓପ୍ୟାଥିର ମହତ୍ତ୍ୱ, ମହାତ୍ମା ହାନିମାନଙ୍କ ଜୀବନୀ ଓ କୀର୍ତ୍ତି ଏବଂ ଏଲୋପାଥିକ୍ ଡାକ୍ତରମାନଙ୍କୁ କିଛି ଗାଳିଗୁଲଜ କରି କିଛି ରୁଣ୍ଡ ଗଳ୍ପର ଉପଶମ କରିହେବ । ଏଥିରେ ଭଲ ଛଡ଼ା ମନ୍ଦ ନାହିଁ ।

କଥାଟା ସମସ୍ତଙ୍କ ମନରେ ଗେବ ହୋଇଗଲା । ସମସ୍ତେ କଥାଟାକୁ ପସନ୍ଦ ଓ ତାରିଫ କଲେ । କେବଳ ତାରିଫ୍ କରି ଅଟକି ଗଲେ ନାହିଁ । ସେ ବେଉସାଟାକୁ ଅତି ଉତ୍ସାହର ସହିତ ଆଦରିଗଲେ ।

ଉଚ୍ଚଶିକ୍ଷିତ, ଭଦ୍ର, ମଧୁର ବ୍ୟବହାର, ବକ୍ତୃତା ଦେବାର ପଟୁତା ନୂଆ ବହି ପଢ଼ିବା ଓ ଜ୍ଞାନ ଆହରଣରେ ପାରଦର୍ଶିତା ହେତୁ ଧଳାମୁଣ୍ଡିଆ ଅଧ୍ୟାପକମାନଙ୍କର ବେଉସା ଜମିଉଠିଲା ।

ଏଣେ ଅବସରପ୍ରାପ୍ତ ତଥା ଗୋପନରେ ଘରେଇ ଚିକିତ୍ସା କରୁଥିବା ସରକାରୀ ଡାକ୍ତରମାନଙ୍କ ଭିତରେ ଚହଳ ପଡ଼ିଗଲା । ଗୋଟିଏ ସାହିଆଙ୍କ ଇଲାକା ଭିତରେ ଅନ୍ୟ ସାହିଆ ଆସି ଗୃହ୍ଣା ଆଦାୟ କଲେ ଯେମିତି ଉତ୍ତେଜନା ଓ ଦଙ୍ଗା ହାଙ୍ଗାମା ସୃଷ୍ଟି ହୁଏ, ଡାକ୍ତରମାନଙ୍କ ଇଲାକା ଭିତରେ ଅଧ୍ୟାପକମାନେ ପଶିଯିବାରୁ ସେହିପରି ଅବସ୍ଥା ସୃଷ୍ଟି ହେଲା । ଯେହେତୁ ଭଦ୍ରଲୋକ ଓ ବିବେକୀ, ତେଣୁ ଗଣ୍ଡଗୋଳଟା ଲାଠି ଛୁରି ପର୍ଯ୍ୟନ୍ତ ନ ଯାଇ, କେବଳ ଉତ୍ତେଜନାଟାରେ ଅଟକି ଗଲା ।

ଆକ୍ରମଣ ଓ ପ୍ରତି ଆକ୍ରମଣ, କଳା ଓ ସଂସ୍କୃତି ମଧ୍ୟରେ ସୀମାବଦ୍ଧ ହୋଇ ରହିଲା । ସର୍ବସାଧାରଣ ଯେପରି ନାକ ନ ଟେକନ୍ତି ଓ ସେମାନଙ୍କୁ ଇତର ଶ୍ରେଣୀର ଲୋକ ବୋଲି ନ ଭାବନ୍ତି, ସେଥିପ୍ରତି ଉଭୟପକ୍ଷ ସତର୍କ ଦୃଷ୍ଟି ଦେଲେ ।

ଡାକ୍ତରମାନେ ବି ଏକଜୁଟ୍ ହୋଇ ଅଧ୍ୟାପକମାନଙ୍କ ଇଲାକା ଭିତରକୁ ଧସେଇ ପଶିବେ, ତାର ଯୋଜନା କରି ଲାଗିଲେ । ଜଣେ କହିଲେ ଏ ବ୍ୟାଟ ଅଧ୍ୟାପକମାନେ ଚିକିତ୍ସକ ବନିଯାଉଲେ । ଆମ ଇଲାକା ଭିତରେ ପଶି ଆମକୁ ଗଡେଇ ଦେଲେ । ଆମେ ସେମିତି ସାହିତ୍ୟିକ ବନିଯିବା । ସେମାନଙ୍କ ଇଲାକା ଭିତରକୁ ଯାଇ ସେମାନଙ୍କୁ ଗଡେଇ ଦେବା । ସେମାନଙ୍କୁ ଦେଖେଇ ଦେବା ଆମକୁ ବି ସାହିତ୍ୟ କରି ଆସେ, ଆମେ ଆଉ କଥାରେ ଖାଲି ସମୟ ନଷ୍ଟ କରିବା ନାହିଁ । ଚାଲ କାମରେ ଲାଗିଯିବା । ସର୍ବସାଧାରଣଙ୍କୁ ଉଚ୍ଚଶକ୍ତିସମ୍ପନ୍ନ (ଫର୍ଟିଫାଇଡ୍) ସାହିତ୍ୟ ପରିବେଷଣ କରିବା । ଲୋକେ ତାକୁ ସେବନ କରି ଦୋହଲି ଯିବେ । ସେମାନେ ଆମର ଉଚ୍ଛ୍ୱସିତ ପ୍ରଶଂସା କରି କ୍ରିକେଟ୍‌ରେ ଛକା ମାରିଲା ବେଳର ଆନନ୍ଦ ଧ୍ୱନି କରିବେ । ଓଡ଼ିଆ ଅଧ୍ୟାପକମାନଙ୍କୁ ହେୟଜ୍ଞାନ କରି ହଟେଇ ଦେବେ । ଆମେ ସମସ୍ତେ ସାହିତ୍ୟିକ ଓ ସାଂସ୍କୃତିକ ବିପ୍ଳବ ସୃଷ୍ଟି କରିଦେବା । ଚାଲ ଲ୍ୟାପ୍ କରି କାମ ଆରମ୍ଭ କରିଦେବା । ଲୋକେ ହାଁ କରି ରହିଥିବେ ଆଉ କୁହାକୋହି ହେଉଥିବେ—ହେ ଦେଖ ହୋ ଦେଖ ହୋ ଏ କୋଟ କଟାଳମାନେ କବିତା ଲେଖିଲେଣି, ସାହିତ୍ୟ ସୃଷ୍ଟି କଲେଣି, କାନ ଦେଖି ନଥିଲା ନା ଆଖି ଶୁଣି ନ ଥିଲା । ଅଧ୍ୟାପକଗୁଡ଼ାକ ମୁଣ୍ଡରେ ହାତ ଦେଇ ଭାବିବେ—ହରିଲା, ଆମର ହକ୍‌ଥିବା ସମ୍ମାନଗୁଡ଼ାକ ଲୁଟି ନେଲେରେ !

ଜଳଖିଆ ପରେ ପୁଣି ସମାଲୋଚନା ଚାଲିଲା । ଠିକ୍ ହେଲା ଅତିଶୀଘ୍ର ଏକ ସାହିତ୍ୟ ସଭା କରିବାକୁ ହେବ । ପୁଣି ସମସ୍ତେ ଧନ୍ଦହେଲେ ସାହିତ୍ୟର ଆଗଅଡ଼ୁ ଆଲୋଚନା ହେବ । ସାହିତ୍ୟର ଅସଲ ଅଙ୍ଗଟାକୁ ପକଡ଼ି ସମ୍ମୁଖାଏ କରିଦେଲେ । ସବୁଲେ କହ୍ଣିମାତ ହୋଇଯିବ । ସାହିତ୍ୟର ଅସଲ ଅଙ୍ଗଟା କଏ ସେ ବିଷୟରେ ତନାଘନା ଅଣ୍ଡ଼ାଳା ଚାଲିଲା । ଶେଷରେ ତାକୁ ଜଣେ ଖପ୍ କରି ପକଡ଼ି ପକାଇ କହିଲେ— ଆମର ଷ୍ଟେଥୋଟା ଯେପରି ଏକ ଭୂଷଣ, ସାହିତ୍ୟରେ ଅଳଙ୍କାର ସେହିପରି ଏକ ଭୂଷଣ । ପୁଣି ଅଳଙ୍କାର ଭିତରେ ରସହେଲା ଭାବେ । ଚାଲ ଆମେ ପଢ଼ିଲେ 'ସାହିତ୍ୟରେ ରସ' ବିଷୟରେ ଏକ ମାତବରିଆ ସଭା କରିବା । ଶୁଭସ୍ୟ ଶୀଘ୍ରଂ ।

ସଭାର ଦିନ ଠିକ୍ ହୋଇଗଲା । ଚି. କ. ସା. ପ. ବା ଚିକିତ୍ସକ କଳା ସାହିତ୍ୟ ପରିଷଦ ନାଆଁରେ ନିମନ୍ତ୍ରଣ ପତ୍ର ଛପାହେଲା । ନଙ୍ଗ ହାଡ଼ ଓ କଲମକୁ ଛକି ପକାଇ

ଏକ ନିଶାଣ ମୋହର ବା ମନୋଗ୍ରାମ ସମନ୍ୱିତ ପତ୍ରର ଶିରୋନାମା ପାଖରେ ଥିଲା । ଖବରକାଗଜ ଓ ପାଚୀରପତ୍ରରେ ସଭାର ବିଜ୍ଞାପନ ଦିଆଗଲା । ଗୋଟିଏ ପ୍ରାଚୀରପତ୍ରରେ ଥିଲା— ଚିକିତ୍ସକ କଲା ସାହିତ୍ୟ ପରିଷଦ ପକ୍ଷରୁ ସାହିତ୍ୟ ସଭା । ଚିକିତ୍ସକମାନେ ସାହିତ୍ୟ ରସ ପରିବେଷଣ କରିବେ । ଗୋଟାଏ କଏ ଛେଚଡ଼ା ଟୋକା ପ୍ରାଚୀରପତ୍ର ତଳେ ଗୋଟାଏ ବ୍ୟଙ୍ଗଚିତ୍ର କରି ମାରିଦେଇଥିଲା । ଲୋକେ ତାରି ପାଖରେ ହୋ ହା ହେଉଥିଲେ । ଚିତ୍ରରେ ଥିଲା—ଅପରେଶନ ଟେବୁଲ ଉପରେ ଗୋଟାଏ ରୋଗୀ, ଚିତର ଚୋଡ଼ା ହୋଇଛି । ଜଣେ ଡାକ୍ତର ରୋଗୀର ଝୁଲାତଳ ଆଡ଼କୁ ଥିବା ଗୋଟାଏ ଭଷାରୁ ଉଲଆ କିଛି ଜିନିଷକୁ କାଟୁଛନ୍ତି । ଟେବୁଲ ତଳେ ଚାଲିଟି ଅଛି । ଟେବୁଲରୁ ତା ଭିତରକୁ ଟପ ଟପ୍ ହୋଇ ପାଣିଆ ଜିନିଷ ପଡ଼ୁଛି । ସେଠି ଲେଖା-ହୋଇଛି ରସ । ଲୋକେ ସେଇଠି ଉଣ୍ଡା ହେଉଥାଆନ୍ତି—ଆରେ ହେଇଟିରେ ସାହିତ୍ୟ ରସ ଟପ୍ ଟପ୍ ହୋଇ ବାଲଟିରେ ପଡ଼ୁଛି ।

ଏହାପରେ ହାଇହାଲ୍ଲା ଭିତରେ ସଭାର ଦଳଟି ସୁସଜ୍ଜିତ ଶ୍ରୀରାମଚନ୍ଦ୍ର ଭବନ ଭିତରେ ପଶିଗଲା ।

ସନ୍ଧ୍ୟାରେ ଘଣ୍ଟା କଣ୍ଟା ଠିକ୍ ଛଅ ଓ ମିନିଟ୍ କଣ୍ଟା ଠିକ୍ ବାରଟା ଉପରେ ହେବାମାତ୍ରେ ଉଦ୍ୟୋକ୍ତା, ସଭାପତି, ମୁଖ୍ୟଅତିଥି, ମୁଖ୍ୟବକ୍ତା, ସମ୍ମାନିତ ଅତିଥି, ପଧାନ ଅତିଥି, ପ୍ରଧାନ ବକ୍ତାଙ୍କୁ ସସମ୍ମାନ ପାଛୋଟି ନେଇ ମଞ୍ଚ ଉପରେ ବସାଇଲେ ଏବଂ ଜଣେ ନର୍ସ ସମସ୍ତଙ୍କ ବେକରେ ପୁଷ୍ପମାଳ ଲମ୍ବାଇ ଦେଲେ । ପରିଚୟ ପ୍ରଦାନକାରୀ ଝଟ ପରେ ମଞ୍ଚାସୀନ ବ୍ୟକ୍ତିମାନଙ୍କ ପରିଚୟ ପ୍ରଦାନ କରି ସଭାକାର୍ଯ୍ୟ ଆରମ୍ଭ କରିବାକୁ ସଭାପତିଙ୍କୁ ଅନୁରୋଧ କଲେ ।

ସଭାପତି ଠିଆ ହୋଇପଡ଼ି କହିଲେ—ସୁଧୀବୃନ୍ଦ, ଆପଣମାନେ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ ସାହିତ୍ୟ ଚର୍ଚ୍ଚା ଏବେ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ ଭିତରେ ସୀମାବଦ୍ଧ ହୋଇ ରହିନାହିଁ । ଆମ୍ଭେମାନେ ବିଜ୍ଞାନୀ ହୋଇଥିଲେହେଁ ସାହିତ୍ୟ ସଂସ୍କୃତି ଓ କଳାର ଅନୁଶୀଳନରେ ଯେ ପଛେଇନାହୁଁ ତାହା ଆପଣମାନଙ୍କୁ ଆଜି ଏହିଠାରେ ଜଣେଇ ଦେବାକୁ ଆସିଛୁ । ସାହିତ୍ୟ ଗୋଟିଏ ମିକ୍‌ସ୍ଚର । ତହିଁରେ ଉପଦେଶ ଉଚଣ୍ଡସମ୍ପନ୍ନ ବା ହାଇପୋଟେନସିର ଏକ ଇନ୍‌ଗ୍ରେଡ଼ିଏଣ୍ଟ ବା ଉପାଦାନ । ଡିସ୍ୱାଲେବ ବା ଆକ୍‌ସନ ଅନୁଯାୟୀ ଏହା ନଅପ୍ରକାର । ଆଜିର ବକ୍ତାଗଣ ପ୍ରତ୍ୟେକର ସ୍ୱରୂପ ବିଷୟରେ ସଂକ୍ଷେପରେ ଏଠାରେ କହିବେ । ମୁଁ ବର୍ତ୍ତମାନ ଯୌନ ରୋଗ ପ୍ରଫେସରଙ୍କୁ ଶୃଙ୍ଗାର ରସ ବିଷୟରେ କହିବାକୁ ଅନୁରୋଧ କରୁଛି ।

ପ୍ରଫେସର ଉଚିପତି କହିଲେ—ମାନ୍ୟବର ସଭାପତି ଓ ସୁଧୀବୃନ୍ଦ, ଶୃଙ୍ଗାର ରସ ସାରା ବିଶ୍ୱରେ ପରିବ୍ୟାପ୍ତ । କୀଟପତଙ୍ଗଠାରୁ ମନୁଷ୍ୟ ପର୍ଯ୍ୟନ୍ତ ଏହା ସବୁ ପ୍ରାଣୀଙ୍କ ଠାରେ କୁତୁକୁତୁ ହୋଇ ରହିଛି । ପ୍ରାଣୀମାନଙ୍କ ଠାରେ ଏହା ନିହିତ ଥାଏ । କିନ୍ତୁ ମଣିଷ ସଦା ଆକ୍ରାନ୍ତ ଥାଏ । ଏହାର ପ୍ରାଦୁର୍ଭାବରେ କଲେଜ ଛାତ୍ରଛାତ୍ରୀ ପାଗଳ ଓ ହିଷ୍ଟିରିଆରୋଗାକ୍ରାନ୍ତ ହୋଇପଡ଼ନ୍ତି । ବହିପତ୍ର ବିକି, ବାପାଙ୍କ ବାକ୍ସରୁ ଚୋରି କରି ଉପହାର ସାମଗ୍ରୀ କିଣନ୍ତି । ଏହା ଅକବିଙ୍କୁ କବି, କବିଙ୍କୁ ମହାକବି କିମ୍ବା ବାତ୍ୟା କବି କରିଦିଏ । ଏହି ରସର ଯଥେଚ୍ଛାଭାବର ଉପଭୋଗ କରୁଥିବା ବ୍ୟକ୍ତିଗଣ ମୋ ନିକଟକୁ ଆସିଥାଆନ୍ତି । ଆପଣମାନେ ଯୌନ ରୋଗ ଓ୍ୱାର୍ଡରେ ଏହାର ସତ୍ୟତା ଉପଲବ୍ଧି କରିପାରିବେ । ଧନ୍ୟବାଦ ।

ସଭାପତିଙ୍କ ନିମନ୍ତ୍ରଣକ୍ରମେ ଫର୍ମାକୋଲୋଜି ପ୍ରଫେସର କହିଲେ ନାଇଟ୍ରସଅକସାଇଡ୍ ଶୁଙ୍ଘାଇଲେ ରୋଗୀ ଜୋରରେ ହସେ । ହସର ଜନ୍ମ ଏହିଠାରେ । ହସ ରୋଗୀର ମନ ଓ ଶରୀରରେ ଗଭୀର ସୁପ୍ରଭାବ ପକାଇଥାଏ । ରୋଗୀର ଆଶୁ ଆରୋଗ୍ୟ ଦିଗରେ ହସ ଔଷଧର ଏକ ପ୍ରଧାନ ସାହାଯ୍ୟକାରୀ ବୋଲି ଚିକିତ୍ସକ ବିଜ୍ଞାନୀମାନେ ଦୃଢ଼ ମତ ପ୍ରକାଶ କରନ୍ତି । ହସ ଶରୀରକୁ ସୁସ୍ଥ ରଖେ । ଶରୀରରେ ଜୀବନ ଜାତ କରାଇ ଏହା ସ୍ୱାସ୍ଥ୍ୟର ଉନ୍ନତି ସାଧନ କରିଥାଏ । ହସକୁରାମାନଙ୍କର ମନ ସର୍ବଦା ପ୍ରଫୁଲ୍ଲ ରହିଥାଏ । ସେମାନେ ପାଗଳା ହୁଅନ୍ତିନ କହିଲେ ଚଳେ । ସମସ୍ତଙ୍କର ଦିନ ଭିତରେ ଅନ୍ତତଃ ଘଣ୍ଟାଏ ହସିବା ଦରକାର । ଧନ୍ୟବାଦ ।

କରୁଣ ରସ ବିଷୟରେ ଜଣେ ହାଉସ୍ ସର୍ଜନ କହିଲେ—ରୋଗୀ ନିକଟକୁ ସାଲାଇନ୍ ଓ ଅକ୍ସିଜେନ୍ ଆସିଲାବେଳେ କରୁଣ ରସର ଆବିର୍ଭାବ ହୁଏ । ଅନେକ କ୍ଷେତ୍ରରେ ଏହା କ୍ରନ୍ଦନରେ ପରିଣତ ହୋଇଥାଏ । ଡାକ୍ତରଖାନାରେ ଏ ରସର ପ୍ରାଚୁର୍ଯ୍ୟ ସର୍ବଦା ଦେଖାଦେଇଥାଏ । ଏହା ଶରୀର ଓ ମନର ହାନିକାରକ ଏବଂ ବର୍ଜନୀୟ ।

ଡାକରା ପାଇ ସର୍ଜରୀ ପ୍ରଫେସର ବୀର ଠାଣିରେ ମଞ୍ଚ ଉପରକୁ ଯାଇ ବୀର ରସ ବିଷୟରେ କହିଲେ—ଅପରେସନ ଥିଏଟରରେ ବୀର ରସର ପ୍ଲାବନ ଘଟେ, ଯୁଦ୍ଧକ୍ଷେତ୍ରକୁ ଗଲାବେଳେ ସ୍ତ୍ରୀ ହସି ହସି ବୀରବେଶ ପିନ୍ଧେଇ ଦିଏ । ହସି ହସି ଖଣ୍ଡା ଧରାଇ ଦିଏ । ଆମେ ସେହିପରି ଅପରେସନ୍ ଟେବୁଲ ପାଖକୁ ଯିବା ପୂର୍ବରୁ ସୁଶ୍ରୀ ସିଷ୍ଟର ସ୍ମିତ ହସ ମୁହଁରେ ଫୁଟାଇ ସର୍ଜନ ବେଶରେ ସଜାଇ ଦିଏ ଏବଂ ଟେବୁଲ ପାଖରେ ଛୁରୀ ଓ ଅନ୍ୟାନ୍ୟ ଅସ୍ତ୍ର ଧରାଇଦିଏ । ରୋଗକୁ ଛୁରି ଓ ଅନ୍ୟାନ୍ୟ ଅସ୍ତ୍ରରେ

କାଟି ମୂଳପୋଡ଼ ନ କରିବା ଯାଏ ଟେବୁଲ ପାଖରୁ ପଳେଇଯିବା ଦେଉନା । କିନ୍ତୁ କଖାରୁ କୋଷ ବା ଷ୍ଟ୍ରାଟୋର ଟ୍ୟୁମର ସହିତ ଯୁକ୍ତ ହେଲେ ବହୁତ ସମସ୍ତ ଧର ସାଧାରଣ ଜମିଲ ଲାଗେ । ଏହିଠାରେ ବୀର ରସ ଆପଣମାନେ ପାଇ ପାରିବେ । ଧନ୍ୟବାଦ ।

ଅନାଟୋମି ପ୍ରଫେସର ଉତ୍ପାନକ ରସ ବିଷୟରେ କହିଲେ—ଆପଣମାନେ ଶବ ବ୍ୟବଚ୍ଛେଦ ବା ଡିସେକ୍‌ସନ୍ ରୁମ୍ ଓ ଶବାଧାର ଟ୍ୟାଙ୍କ୍ ଦେଖିଲେ ଏ ରସ ଆସ୍ୱାଦନ କରିପାରିବେ । ଅଧିକ ବକ୍ତୃତା ନିଷ୍ପ୍ରୟୋଜନ । ଧନ୍ୟବାଦ ।

କ୍ଲିନିକାଲ୍ ପ୍ରଫେସର ବୀଭତ୍ସ ରସର ଧାରଣାଦେବାକୁ ଯାଇ କହିଲେ —ଆପଣମାନେ ଅଣୁବୀକ୍ଷଣ ପରୀକ୍ଷାଗାରରେ ପଶିବା ମାତ୍ରେ ଦେଖିବେ ଧାଡ଼ି ଧାଡ଼ି ହୋଇ ନାନା ନମୁନାର ମଳ, ମୂତ୍ର, ପୂଜ ଥୁଆ ହୋଇଛି । ବୀଭତ୍ସ ରସ ବିଷୟରେ ଆଉ ଅଧିକ କଥନ କହିବି । ଧନ୍ୟବାଦ ।

ପାଥୋଲଜି ଅଧ୍ୟାପକ ଅଦ୍ଭୁତ ରସ ବିଷୟରେ କହିଲେ—ଡାକ୍ତରଖାନାରେ ଆପଣମାନେ ବହୁତ ଅଦ୍ଭୁତ ବସ୍ତୁ ଦେଖିପାରିବେ । ମଣିଷ ମୁଣ୍ଡରେ ଶିଙ୍ଘ ଦେଖିଛନ୍ତି ? ମଣିଷ କୁକୁଡ଼ା ପରି ଅଣ୍ଡା ଦେବା କଥା ଶୁଣିଛନ୍ତି ? ବିଶ୍ୱାସ ହେଉନି, ଅଦ୍ଭୁତ କଥା ପରି ଲାଗୁଛି ? ମୁଁ କହୁଛି ଏହା ଅଦ୍ଭୁତ ହେଲେ ବି ସତ୍ୟ । ସ୍କୁଲରୁ ଆପଣମାନେ ପାଥୋଲଜି ମ୍ୟୁଜିଅମ୍‌କୁ ଦେଖିବେ ଶୋଟାଏ ହାର୍ଣ୍ଣପାପିଲୋମା ବା ଶିଙ୍ଘ ଆଉ ହାଇଡ଼ାଟିଡ଼ସିଷ୍ଟ ବା ଅଣ୍ଡାର ନମୁନା ମଣିଷ ଦେହରୁ କାଢ଼ା ହୋଇ ସୁରକ୍ଷିତ ନମୁନାରୂପେ ଥୁଆ ହୋଇଛି । ଏପରି ବହୁତ ଅଦ୍ଭୁତ ବିଷୟ ଆପଣମାନେ ଡାକ୍ତରଖାନାରେ ଦେଖିପାରିବେ । ଧନ୍ୟବାଦ ।

ରୌଦ୍ର ରସ ବିଷୟରେ ଡାକ୍ତର ସଂଘର ନେତା କମ୍ୟୁନିଷ୍ଟିଆ ସେନେଟେଙ୍କ କହିଲେ—ଯେତେବେଳେ ଜଣେ ଡାକ୍ତରୀ ବିଦ୍ୟାର 'ଅ-ଆ' ଜାଣି ନ ଥିବା ସ୍ୱାସ୍ଥ୍ୟମନ୍ତ୍ରୀ ତାଙ୍କ ମୂର୍ଖତାକୁ ଡାକ୍ତରମାନଙ୍କ ଉପରେ ଲଦି ଦିଅନ୍ତି, ସେତେବେଳେ ଡାକ୍ତରଖାନାରେ ରୌଦ୍ର ରସର ସୋଟ (ସ୍ଳୁଇସ) ଖୋଲିଯାଏ, ଡାକ୍ତରଖାନାରେ ମିଟିଂ, ଷ୍ଟ୍ରାଇକର ସୂତ୍ରପାତ ହୋଇଯାଏ । ସମସ୍ତଙ୍କ ମୁହଁରେ କ୍ରୋଧର ବନ୍ୟା ଛୁଟେ । ସେତେବେଳେ ଆପଣମାନେ ରୌଦ୍ର ରସର ପରିଚୟ ପାଇଯିବେ । ଧନ୍ୟବାଦ ।

ଶେଷରେ ଶାନ୍ତ ରସ ବିଷୟରେ ସଂକ୍ଷିପ୍ତ ଭାଷଣ ଦେବାକୁ ମୃତ୍ୟୁ ପ୍ରମାଣପତ୍ର (ଡେଥ ସାର୍ଟିଫିକେଟ୍) ଦାତା ଡାକ୍ତରଙ୍କର ଡାକରା ପଡ଼ିବାରୁ ସେ କହିଲେ—କାଳ ଆଶ୍ରମରେ ପାଣ୍ଡବମାନେ ହିମାଳୟ ଉପର ଦେଇ ସ୍ୱର୍ଗକୁ ଗଲାବେଳେ ଏହି ଶାନ୍ତ

ଉପରେ ଜୁତ୍‌ ବୁଟ୍‌ ହୋଇଥିଲେ । ଏବେ କଲିଶେଷ ଆଡ଼କୁ ଲୋକେ ଆମ ଡାକ୍ତରଖାନା ଭିତର ଦେଇ ଚୋଲିପେଲି ସ୍ୱର୍ଗକୁ ଯାଉଛନ୍ତି । ଆପଣମାନେ ସେତିକି-ବେଳେ ସେଠାରେ ପହଞ୍ଚିଗଲେ ଏହି ଶାନ୍ତ ରହକୁ ଦେଖି ପାରିବେ, ଉପଭୋଗ କରିପାରିବେ । ମୁଁ ବକ୍ତୃତାକୁ ଅଧିକ ଫେଟେଇବାକୁ ଚାହେଁ ନାହିଁ । ଧନ୍ୟବାଦ ।

ଅବସରପ୍ରାପ୍ତ ଚର୍ମରୋଗ ଅଧ୍ୟାପକ ମାନ୍ୟବର ସଭାପତି ତାଙ୍କର ଅଭିଭାଷଣ ଦେବା ପାଇଁ ଉଠିବାକୁ ଜଣେ ହୋମିଓପ୍ୟାଥି ଚିକିତ୍ସା ଆରମ୍ଭ କରିଥିବା ଅବସରପ୍ରାପ୍ତ ଓଡ଼ିଆ ଅଧ୍ୟାପକ କିଛି କହିବାକୁ ଅନୁମତି ମାଗିଲେ । ସଭାପତି ମନା କରିଦେଲେ ଏବଂ ନିଜ ବକ୍ତବ୍ୟ ଚଟାପଟ୍‌ ସାରିଦେଲେ ଓ ଅଧ୍ୟାପକଙ୍କୁ ଦୁଇ ନାଆରେ ଗୋଡ଼ ନ ଦେବାକୁ ଉପଦେଶ ଦେଲେ । ଧନ୍ୟବାଦାର୍ପଣ ପରେ ସମସ୍ତେ ପଳେଇଲେ । ଅଧ୍ୟାପକମାନେ ମୁଣ୍ଡରେ ହାତଦେଇ ବସିଥିଲେ । ନିର୍ବାକ୍‌ ହୋଇ ଶେଷରେ ସଭା ଗୃହ ଛାଡ଼ିଲେ ।



# କବିତା ଓ କୋବିଭଜା

ରେଳ ଷ୍ଟେସନ୍‌ରେ ଓହ୍ଲାଇ ପଡ଼ି ଜଣେ ପ୍ରୌଢ଼ ପ୍ଲାଟ୍‌ଫର୍ମ ବାହାରକୁ ଆସିଲେ । ଗୋଟାଏ ରିକ୍‌ସା ପାଖକୁ ଯାଇ ପଚାରିଲେ—

ଆରେ ଆକାଶବାଣୀ କେନ୍ଦ୍ରକୁ ଯିବା ପାଇଁ କେତେ ନେବୁ ?

ରିକ୍‌ସାବାଲା ୪ଟି ଆଙ୍ଗୁଠି ଦେଖାଇ କହିଲା—

ଆଜ୍ଞା, ଚାରି ରୁପିଆ ବାବୁ—ଚାରି ରୁପିଆ ।

ପ୍ରୌଢ଼ ଜଣକ ବିବ୍ରତ ହୋଇ କହିଲେ—ଆରେ ଦୁନିଆଁ ଲୁଟି ନେବ କିରେ ?

ରିକ୍‌ସାବାଲାଟି ଅବିଚଳିତ କଣ୍ଠରେ କହିଲା—ଆଁ ଆଁ, ବାବୁ ମନ୍ତ୍ରୀଠୁ ପିଅନ୍ ଯାଏ ସମସ୍ତେ ଲୁଟି ନେଉଛନ୍ତି ତାତେ ଦିଶୁନି, ମୁଁ ଲୁଟି ନବାର ଦିଶିଗଲା ଏକା କି କଥା କହୁଛ ବାବୁ ?

ଟିକିଏ ଆଗକୁ ଜଣେ ଯୁବକ ଠିଆ ହୋଇଥିଲେ । ସେ ପ୍ରୌଢ଼ଙ୍କ ପାଖକୁ ଆସି ପଚାରିଲେ—ଆପଣ କ'ଣ କବି ସମ୍ମିଳନୀରେ ଯୋଗ ଦେବାକୁ ଯାଉଛନ୍ତି ?

ହଁ ହଁ ସେଇଠାକୁ ଯିବି । ରିକ୍‌ସାବାଲା ଏକାଥରକେ ଚାରିପା ଛଡ଼ାଇ ଦେଉଛି । ଆଗେ ଚାରି ଅଣାକୁ ଖୁସିରେ ଯାଉଥିଲେ । ଏବେ ଚାରିଟଙ୍କା ହାଙ୍କିଲେଣି । କହିଲା, ବାବୁ କେତେ ପରିଶ୍ରମ ତ ପଡ଼ୁନି, ମୁଁ ତ ବହୁବେଳ ହେଲା ଆସି ମୂଳେଉଛି ।

—ଆଜ୍ଞା ରିକ୍‌ସାବାଲା କେହି ପାଦେ ବି ତଳକୁ ଖସୁନାହାନ୍ତି, ମୁଁ ବି ସେହିଠାକୁ ଯିବି, ଚାଲନ୍ତୁ, ଦୁହେଁ ଏକାଠି ଯିବା । ଦୁହେଁ ମିଶି ଚାରି ଟଙ୍କା ଦେଇଦେବା ।

ପ୍ରୌଢ଼ ଜଣକ ରାଜି ହୋଇଗଲେ । ଦୁହେଁ ମିଶି ରିକ୍‌ସାରେ ଗଲେ । ଦୁହେଁ ଦୁହିଁଙ୍କୁ ଅଜଣା । ଜାଣ ପରିଚିତ ହେବାକୁ ଦୁଇଜଣଙ୍କର ମନ ଉଚ୍ଛନ୍ନ ହେଲା । ଯୁବକ ଜଣକ ପ୍ରଥମେ ପଚାରିଲେ ଆପଣଙ୍କ ନାମ ଓ ପରିଚୟ ପଚାରି ପାରେ କି ?

ପୌଢ଼ ଜଣକ ଉଲ୍ଲସିତ ହୋଇ କହିଲେ—ଅପଣ ଯଥାର୍ଥରେ ଜଣେ ଏବ କଥାଟିଏ ମସ୍କଗଲେ 'ପ' ଅନୁପ୍ରାସ ଲଗାଇ—'ପରିଚୟ ପଚ୍ଛିର ପାରେ କି ?"

ବାଃ ବାଃ ମୋ ନାମ ହେଲା ଭାସ୍କର ଭାନୁ ଭଞ୍ଜ, ପିତାଙ୍କ ନାମ ଭଦ୍ର ଭୂଷଣ ଭଞ୍ଜ । ମାତାଙ୍କ ନାମ ଦନୁଜଦଳନା ଦେବୀ, ଘର ପଣ୍ଡା ପଡ଼ିଅ ପୁର । ବ୍ୟବସାୟ ଚଳୁପଦୀ ଚର୍ମ୍ମ ବୃଷ ।

ଯୁବକ ଜଣକ ତାଙ୍କ ମୁହଁକୁ ବାଲୁ ବାଲୁ କରି ଗୁହିଁଥା'ନ୍ତି । କିଛି ଟିକଏ ଚାଉଳ୍‌ ନ କଲେ ଅଭଦ୍ରତା ହେବ ଭାବି ସେ କହିଲେ—ବାଃ ! ଆପଣ ଆପଣଙ୍କ ପରିପାର୍ଶ୍ୱ ପ୍ରାଚୀନ ସାହିତ୍ୟରେ ଜଡ଼ୁବୁଡ଼ୁ ହୋଇଛନ୍ତି, ଆପଣ ବଡ଼ ଭାଗ୍ୟବାନ ସତେ !

ପ୍ରୌଢ଼ ଉଲ୍ଲସିତ ହୋଇ ଯୁବକଙ୍କ ପରିଚୟ ପଚ୍ଛିଲେ । ଯୁବକ ଗମ୍ଭୀର ଓ ଭାବପ୍ରବଣ ହୋଇଯାଇ କହିଲେ—ମୋର ନାମ ଅଗଡ଼ମ୍ ଗୁଡ଼ୁ, ପିତାଙ୍କ ନାମ ବଗଡ଼ମ୍ ଗୁଡ଼ୁ, ମାତା ଖିପଡ଼ି ଡୁଙ୍ଗି, ଘର କଇଁତଣ୍ଡାପୁର ।

ପ୍ରୌଢ଼ ହାଁ କରି ଯୁବକଙ୍କ ମୁହଁକୁ ଗୁହିଁ ରହିଲେ । ବୋକାଙ୍କ ପରି ପଚ୍ଛିଲେ —ଏମିତିଆ ନାମ ତ ମୁଁ ଦେ ବେଦେଲେ ଶୁଣିନ ।

ଆପଣଙ୍କ ନାମ ଅଗଡ଼ମ ଗୁଡ଼ୁ ଗୁଡ଼ୁଟା । କ'ଣ ସାଙ୍ଗିଆ, ଏମିତିଆ ସାଙ୍ଗିଆ ଦୁନିଆରେ ନାହିଁ । ଏହାର ଅର୍ଥ କ'ଣ ? ଦେଖନ୍ତୁ ମୋର ନାମ ଭାସ୍କରଭାନୁ ଭଞ୍ଜ । ଏହାର ଅର୍ଥ ଅଛି । ଏହା ହେଲା ଦୀପ୍ତିମାନ ସୂର୍ଯ୍ୟ । ଭଞ୍ଜ ହେଲା ସାଙ୍ଗିଆ ଅର୍ଥ ବି ଅଛି । ତାହା ହେଲା ଭାଙ୍ଗିବା । ବାପାଙ୍କ ନାମ ଯେମିତି ଭଦ୍ରଭୂଷଣ ଅର୍ଥାତ୍ ଭଦ୍ରର ଯେ ଭୂଷିତ । ଆପଣଙ୍କ ନାମ ହେଲା ଆଗଡ଼ମ ଗୁଡ଼ୁ । ଅଭିଧାନରେ ଏମିତିଆ ଶବ୍ଦ ତ ନାହିଁ ? ତାହାର ଅର୍ଥ କ'ଣ କହନ୍ତୁ ତ ?

ଯୁବକ ଈଷତ୍ ହସି କହିଲେ—ଆପଣମାନେ ହେଲେ ପୁରାତନ, ଏକଦମ୍ ଲଗଲା । ମୂର୍ଖଟାଏ ଦେଖିବା ମାତ୍ରେ ସବୁ ଜାଣିଯିବ, ଗୋରା କି କଳା, ଢେଙ୍ଗା କି ଟେମା କି ଭଲ, ମରୁଡ଼ିଆ କି ନଅଙ୍କିଆ, ବଳୁଆ କି ଦୁର୍ବଳ, ଅଣ୍ଡିରା କି ମାଈ । ଜଣେ ଯଦି ବୁଝିଦେବା ମାତ୍ରେ ବେଗର ପରିଭ୍ରମରେ ତମର ସବୁକିଛି ଜାଣିଗଲା ତେବେ ସେ ଆପଣଙ୍କୁ ଆଉ ପଚ୍ଛିବ କାହିଁକି ? ଆପଣଙ୍କ ପଛରେ ଗୋଡ଼େଇବ କାହିଁକି ? କେହି ଆପଣଙ୍କୁ ନ ପଚ୍ଛିଲେ ଆପଣଙ୍କର ଓଜନ ଆଉ ରହିବ ନା ?

ଆମର ସେ ଭୟ ନାହିଁ, ଆମେ ଆମଦେହରେ ଦଶ ପରସ୍ତ କପଡ଼ା ଗୁଡ଼ାଇଛୁ । ଦ୍ରୌପଦୀଙ୍କ ଦେହରୁ ଲୁଗା କାଢ଼ି କାଢ଼ି ଦୁଃଶାସନ ଦରମର ହେଲାପରି ଅନୁଦ୍ଧରଣୀୟ ହାଲିଆ ହୋଇଯିବ । ତେବେ ବି ଜାଣି ପାରିବନି, ଶେଷରେ ପୁଣି ଆମର ଶରଣ ପଶିବ ।

ପ୍ରୌଢ଼ କହିଲେ, ହଁ, ହଁ ଆପଣ ଯାହା କହୁଛନ୍ତି ତାହା ଯଥାର୍ଥ । ଆପଣଙ୍କ କବିତା ବି ସେହିପରି ଦଶ ପରସ୍ତର ଆବରଣ ଘେରା । କ୍ଲାସ୍‌ରେ ଆଧୁନିକ କବିତା ବୁଝାଇଲା ବେଳେ ଅଧ୍ୟାପକମାନଙ୍କ ଦାନ୍ତ ଭାଙ୍ଗିଯାଏ । ମନେ ମନେ ଅଭିଶାପ ଦେଇ ହାକୁ ତାକୁ କହନ୍ତି—

କେଉଁ ଖୋସାମଦିଆ ଅବାଇଜ ପାଠବହିରେ ଏହାକୁ ବାଛିଲା, ଏଇଟା ଉପର ହାକିମଙ୍କ କବିତା, ଏହାକୁ ପାଠ୍ୟ ପୁସ୍ତକ ପାଇଁ ବାଛିଦେଲେ ଭଲ ଉପୁରି ଆଣିବ ଚଟାପଟ୍ ବଦଳି ହୋଇଯିବ । ଆଗରେ ଠିଆ ହୋଇଥିବା ଅଧ୍ୟାପକଙ୍କର ଉପରେ ଡିଆଁଇ ଦେଇ ତା ଆଗରେ ଠିଆ କରିଦେବ । ପାଠ ସାଙ୍ଗେ ଖେଳ ଖେଳୁଥିବା ଏହି ଅନାର୍ଯ୍ୟଗୁଡ଼ାକ ନର୍କକୁ ଯାଆନ୍ତୁ । ଗୁରୁମାନେ ବି କହିବାର ଶୁଣିଛୁ, ଯେଉଁ ବେହେଲ ଏହାକୁ ଲେଖିଛି ଆଉ ଯେଉଁ ଖୋସାମଦିଆ ଏହାକୁ ବାଛିଛି ସେମାନେ ଆପି ଏହାର ଅର୍ଥ ବୁଝାନ୍ତୁ ତ ? ଆମ ମୁଣ୍ଡକୁ ଗୋଳମାଳିଆ କରିବାରେ ଲାଗିଛନ୍ତି, ସେମାନେ ସେମାନଙ୍କ ଅଧ୍ୟୟନ କକ୍ଷକୁ ଆସିଲେ ଯାମଟାକୁ ବେଙ୍ଗ କହିଦେଲେ ସେମାନେ ୟେସ୍ ସାର୍ କହିଦିଅନ୍ତି, ଆମେ ସେମିତି ତାଙ୍କୁ ୟେସ୍ ସାର୍ କହିବୁ ବୋଲି ସେମାନେ ଭାବନ୍ତି, ବୁଡ଼୍‌ବକ୍, କଉଠିକାର, ମୋ ପୁଅ ମୁହଁରୁ ମୁଁ ଏହା ନିଜେ ଶୁଣିଛି । ଆଚ୍ଛା, ଆପଣ ନିଜ ନାଁର ଅର୍ଥ ବୁଝାନ୍ତୁ ତ ?

ଯୁବକ ଜଣକ ହସି ହସି କହିଲେ—

ଆମେ ହେଉଛୁ ଦୁର୍ଭେଦ୍ୟ, ସାହିତ୍ୟର ଦୁର୍ଭେଦ୍ୟ, ସାହିତ୍ୟର ଅଭେଦ୍ୟ କବଚ ପରିହିତ ପ୍ରହରୀ, ସ୍ୱେଚ୍ଛାରେ ଆମେ ପଥ ପ୍ରଦର୍ଶନ ନ କଲେ କୌଣସି ସାହିତ୍ୟିକ ସେ ସାହିତ୍ୟ ମଧ୍ୟକୁ ପ୍ରବେଶ କରିବା କଳ୍ପନାତୀତ, ଆପଣ ଯେତେବେଳେ ଜିଜ୍ଞାସୁ ହେଲେଣି ମୁଁ ନିଶ୍ଚୟ କହିବ । ଦେଖନ୍ତୁ ପ୍ରଥମେ ମୋ ନାମ ହେଲା ଗଡ଼ମ୍ ଗୁଡ, ଗଡ ବୋଇଲେ ଶୀର୍ଷ, ଡମ୍ ବୋଇଲେ ମୌନତା ଅର୍ଥାତ୍ ଶୀର୍ଷ ସ୍ଥାନରେ ଥାଇ ସ୍ୱଚ୍ଛା ଯିଏ ଅଷ୍ଟାଳିକ ପରିବର୍ତ୍ତେ ସଂଯମ ଅବଲମ୍ବନପୂର୍ବକ ମୌନ ରହେ । ମୋ ନାମ ହେଲା ଯେ ମୁଁ ଶୀର୍ଷ ସ୍ଥାନରେ ଥାଇ ଚୁପ ରହିବା ଲୋକ, ସାଙ୍ଗିଆ ହେଲା ଗୁଡ଼, ଗୁଡ଼୍‌ର ଟିକିଏ କମ ହେଲା ଗୁଡ଼ । ଯେମିତି ବାର୍ଡରୁ ବାର୍ଡ଼ି, ସମସ୍ତେ କହନ୍ତି 'ଗଡ଼୍ ଇଜ୍ ଗୁଡ', ଅନ୍ୟ

କଥାରେ 'ଗୁଡ୍ ଇଜ୍ ଗଡ୍', ଗୁଡ଼ଠାରୁ ଟିକଏ କମ୍ ହେଲା ଗୁଡ଼, ଅର୍ଥାତ୍ ବଡ଼ଙ୍କଠାରୁ ଟିକଏ କମ୍, ଆମ ସାଙ୍ଗିଆ ସୁଝାଇ ଦିଏ ଯେ ଆମେ ଗଡ୍ଙ୍କଠାରୁ ଟିକଏ କମ୍ । ସମକକ୍ଷ ହେବାର ଅଯୋଗ୍ୟତା ଆମର ନାହିଁ । ପିତା ହେଲେ ବଡ଼ତମ୍ ଗୁଡ଼, ବଡ଼ଙ୍କୁ ବୁଝେଇବା ଦରକାର ନାହିଁ । ଗମ୍ ବୋଇଲେ ଅଠା । ଅଠାରେ ଗୋଟିଏ ଜନ୍ତୁ ଲାଗିଗଲେ ତାହା ସହଜରେ ଛାଡ଼େ ନାହିଁ, ମୋ ବାପା ସେହିପରି ଆଧୁନିକ କବିତାରେ ଲାଗିଯିବାରୁ ହେଉଥରେ ଗମ ବା ଅଠାରେ ଲାଗିଗଲାପରି ଲାଗି ରହିଥିଲେ, ତାଙ୍କପରି ପିତାଙ୍କ ପୁତ୍ର ହୋଇ ମୁଁ ଅତ୍ୟନ୍ତ ଗର୍ବିତ । କେତେ ଆଦରରେ କେତେ କଠିନ ମନ୍ତ୍ରଥିବା ନାମଟିଏ ସେ ମୋର ନ ଦେଇଛନ୍ତି । ସବୁବେଳେ ମୁଁ ତାଙ୍କ ପାଖରେ ନତମସ୍ତକ ହୋଇ ରହିଛି ।

ପ୍ରୌଢ଼ଙ୍କ କାନ ସେତେବେଳକୁ ଝେଁ ଝେଁ ଡାକ ଦେଉଥିଲା । ତାପରେ ଭକ୍‌ସାବାଲ୍ ଭକ୍‌ସାକୁ ବନ୍ଦ କରି କହିଲା– ବାବୁ ଏଇଟା କେନ୍ଦ୍ର । ଓଲ୍‌ହାନ୍ତୁ । ପଇସା ଦେଇ ଦୁହେଁ କେନ୍ଦ୍ର ଭିତରକୁ ପଶିଯାଇ ପଛଧାଡ଼ିରେ ବସିଲେ । ଜଣଙ୍କର କବିତା ସରିଯାଇ ଆ ଜଣଙ୍କର ଆରମ୍ଭ ହେଉଥାଏ, ସେ ଆରମ୍ଭ କଲେ—

ହାଃ ହାଃ ହାଃ ମୁଁ ବାଟରେ ଆସିଲାବେଳେ ଦେଖିଲି ବରଗଛଟାଏ ମଦ୍ୟ ପାଞ୍ଚଟାଏ ଧରି ବସିଛି, ସେ ମୋତେ ତା ପାଖକୁ ଯିବାକୁ ଇଙ୍ଗିତ ଦେଲା । ମୁଁ ଯାଇ ତା ପାଖରେ ବସିଲି, ଢକାଢକାଢକଟିଏ ପେଇବାଟ ଦେଇ ଗଲାବେଳେ ମୁହାଁଟିଏ ପାଉଡ଼ୁଟ୍ ସାହାଯ୍ୟରେ ସେଇଠି ଓଲ୍‌ହାଇ ବରଗଛକୁ କହିଲା—

ଗୁଡ୍ ମର୍ଣ୍ଣିଂ ।

ଆମେ ଉଭୟେ ସେଠାରୁ ପଳାଇଗଲୁ । ମୁଁ ମଦ୍ୟ ପାଞ୍ଚଟି ଗୋଟେଇ ନେଇ ଯାଇଥିଲି ।

ଆଉ ଜଣେ ଉଠି କହିଲେ—କେଉଁ ଶଶୁର ପୁଅ ନଂସ୍କ୍ରସ୍ତ ମଦ ନ ପିଏ, ଅଥଚ ସମସ୍ତେ କହନ୍ତି ମୁଁ ମଦୁଆ, ରେଲ ଗାଡ଼ି ବି ମଦ ପିଏ, ଦଲେଇ ଘାଇ ଖାଇଁଯିବ ? ଖାଙ୍କୁ । ଆମ୍ବାସାଡର୍ କାର୍‌ରେ ମୁଁ ଅଲବତ ବସିବି, ଇନ୍‌ସାର୍ଟ ଭିତରେ ଛାରପୋକ, ନାଃ ଆଉ ଗିଲ୍‌ସେ ସ୍କଚ୍ ନ ପିଇଲେ ଚଳିବ ନାହିଁ । ଓଡ଼ିଶା ବନ୍ଦ, ଭଗବାନ ନକ୍ଷପକ୍ଷ ଦେଖୁଛନ୍ତି, ମହୁଲି ଆଉ ସ୍କଚ୍ ···ହାଃ···ହାଃ···ହାଃ···

ଯୁବକ ଜଣକ ଆଖିବୁଜି କଥାଗୁଡ଼ାକ ପିଇଯାଉଥିଲେ । ପ୍ରୌଢ଼ ଜଣଙ୍କ ତାଙ୍କୁ ହଲାଇ ଦେଇ କହିଲେ—

ହେ ହେ ରିକ୍ସାବାଲା ଆମକୁ ଗୋଟାଏ ଭୁଲ୍ ଥାନକୁ ନେଇ ଆସିଲା, ବଦ୍‌ମାସଟା ଆମକୁ ଗୋଟାଏ ବଲତ ମଦ ଗଳିରେ ଛାଡ଼ିଦେଇ ପଳାଇଲା। ଆସନ୍ତୁ ଆମେ ଏଠାରୁ ପଳାଇବା।

ଯୁବକ ଜଣକ କହିଲେ—ନା ଆଶ୍ଚର୍ଯ୍ୟ ! ଆମେ ଠିକଣା ଥାନରେ ପହଞ୍ଚିଛୁ। କବିତା ପାଠ ଚାଲିଛି। ଧୈର୍ଯ୍ୟ ଧରନ୍ତୁ।

—ଏଁ ଏଗୁଡ଼ାକ କବିତା ! ମଦୁଆମାନଙ୍କର ପ୍ରଳାପକୁ ଆପଣ କବିତା କିପରି କହୁଛନ୍ତି ଓ କାହିଁକି କହୁଛନ୍ତି ତା ତ ମୋ ମୁଣ୍ଡରେ ବିଲ୍‌କୁଲ୍ ପଶୁନାହିଁ। ସେମାନେ ତ ନିଜେ ମଦୁଆ ବୋଲି ପ୍ରକାଶ୍ୟରେ କହୁଛନ୍ତି, ଆପଣ ଉପରେ ପଡ଼ି ସେମାନଙ୍କୁ କାହିଁକି କବି ବୋଲି କହି ସେମାନଙ୍କ ପାଇଁ ଲଢ଼ୁଛନ୍ତି। ତାହା ମୁଁ କଳ୍ପନା କରିପାରୁନ, ଆଉ ସେ ପ୍ରଳାପର କିଛିଅଂଶ ମୋତେ ବୁଝାଇଦେଲେ।

—ଓଃ ! ଆପଣ ଏପରି ସାରଗର୍ଭକ ଭାବଉଦ୍ରେକକାରୀ ଲାଳିତ୍ୟପୂର୍ଣ୍ଣ ଶଣ କବିତାକୁ ମଦୁଆର ପ୍ରଳାପ ବୋଲି କହିବାରୁ ମୁଁ ମର୍ମାନ୍ତିକ ବେଦନା ଅନୁଭବ କରୁଛି। ଆଧୁନିକ କବିତା ଆପଣ ବୁଝିବାଲାଗି ଯେତେ ଚେଷ୍ଟା କରିବେ, କବିତାଠାରୁ ସେତିକି ସେତିକି ଦୂରେଇଯିବେ। ଏହା ଉପଲବ୍ଧି କରିବାର ବିଷୟ। ମିଠା କେମିତିଆ ସ୍ୱାଦ ତାହା କହି ବୁଝେଇ ପାରିବେ ନାହିଁ। ଚିନି ଟିକିଏ ଜିଭ ଉପରେ ଥୋଇଦେଲେ କେବଳ ଅନୁଭବ କରିବେ, କିନ୍ତୁ ବୁଝେଇ ପାରିବେନି।

ଦୁଇ ଜଣଙ୍କର ଉଚ୍ଚବାଚ କ୍ରମେ କର୍ମକର୍ତ୍ତାମାନଙ୍କର ଦୃଷ୍ଟି ଆକର୍ଷଣ କଲା। ଋଜ ପଡ଼ିବାଲାଗି ବାରମ୍ବାର ନିଷ୍ଫଳ ଅନୁରୋଧ ପରେ ସେମାନେ ପାଖକୁ ଆସି ହଲ୍ ପରିତ୍ୟାଗ କରିବାକୁ ଅନୁରୋଧ କଲେ।

ପ୍ରୌଢ଼ ଆଉ ବିଳମ୍ବ ନ କରି ହଲ୍ ପରିତ୍ୟାଗ କଲେ। ଯୁବକ ମର୍ମାହତ ହୋଇ ଭଦ୍ରତା ରକ୍ଷା କରିବା ଲାଗି ହଲ୍‌ରୁ ବାହାରି ତାଙ୍କର ଅନୁଗମନ କଲେ। ପାଖକୁ ଯାଇ କହିଲେ—ବ୍ୟସ୍ତ ହୁଅନ୍ତୁ ନାହିଁ। ମୁଁ ପଳାଇ ଆସିଲି, ଏବେ କୁଆଡ଼େ ଯିବା ?

ଆମର ଆକାଶବାଣୀ ଯିବା ଉଚିତ୍ ଥିଲା। ଭୁଲ୍‌ରେ ବିକାଶବାଣୀ ଚାଲି-ଆସିଲୁ।

ଗୋଟିଏ ରିକ୍ସାରେ ଦରଦାମ୍ ନ କରି ଦୁହେଁ ଧକଡ଼ଧଡ଼ ବସିପଡ଼ିଲେ। ରିକ୍ସା ଜଖମ ଥିଲା। ଚାଲିଲାବେଳେ ଧକଡ଼ ଧକଡ଼ ଧକଡ଼ ଧଡ଼୍, ଧକଡ଼୍ ଧଡ଼୍ ଧଡ଼୍ ଶବ୍ଦ

କରୁଥିଲ । ଯୁବକଟି ବିରକ୍ତ ହୋଇ କହିଲ—ହେଃ ଏ ଭଙ୍ଗା ଶକ୍‌ଟାରେ ବସିବାକାହିଁ । ଖୁଲରୁ ଆଉ ଗୋଟିଏ ଶକ୍‌ଟାରେ ବସିବା ।

ଧ୍ୟାନରେ ତ ପ୍ରୌଢ଼ ଚମକି ଉଠି କହିଲେ—ଅହା ଏତେ ସୁଲଳିତ ଯେ ବାଜୁଥିବା ଶକ୍‌ଟା ଗୁଡ଼ିକ ମନେ ହେଉନ, ଆପଣ କ'ଣ ଶୁଣିପାରୁ ନାହାନ୍ତି, ଧକଡ ଧକଡ଼ ଧକଡ଼୍, ଆହା କଜୀବ ମୁଖରୁ ଅନୁପ୍ରାସ ଓ ଯମକଯୁକ୍ତ ସଙ୍ଗୀତ ବାହାରୁଛି । ମୋ ଦେହ ଉଲ୍ଲସିତ ହୋଇ ଉଠୁଛି । ଶୁଣିବାକୁ ଚେଷ୍ଟା କରନ୍ତୁ ।

ଯୁବକଙ୍କ ଆଖିରୁ ଜୁଳୁଜୁଳିଆ ପୋକ ବାହାରିଗଲେ । ସେ ମନେ ମନେ ଭାବିଲେ ପ୍ରୌଢ଼ ନିଶ୍ଚୟ ବିକୃତ ମସ୍ତିଷ୍କଯୁକ୍ତ, ତା ନହେଲେ ଭଙ୍ଗା ଶକ୍‌ଟାର ଧକଡ଼ ଧକଡ଼ ଧକଡ଼କୁ ଅନୁପ୍ରାସ ଓ ଯମକଯୁକ୍ତ କବିତା କହନ୍ତେ । ସେ ନିରୁତ୍ତର ହୋଇ-ପଡ଼ିଲେ ।

ନବାଣବାଣୀ କେନ୍ଦ୍ରରେ ପହଞ୍ଚି ଦୁହେଁ ପଛ ଆସନରେ ବସିଲେ । କବିତା ପାଠ ଆରମ୍ଭ ହୋଇଯାଇଥାଏ । ଜଣେ କବି ତ୍ରିଭଙ୍ଗୀ ଠାଣିରେ ଠିଆହୋଇ କବିତା ବୋଲିଲାପରି ପାଠକଲେ, ରାମ ଅଣ ସୁତ, ତା ଅଣ, ତାଅଣ, ତା ଅଣ, ତା ଅଣ, ତା ଅଣ, ତା ଅଣ, ତା ସୁତ, ତା ସୁତ, ତା ସୁତ, ତା ସୁତ···

ପ୍ରୌଢ଼ ଜଣକ ସ୍ୱର୍ଗର ଉଦ୍‌ବୀ ଅମୃତ ପାଇଗଲାପରି କବିତାକୁ ଧ୍ୟାନମଗ୍ନ ହୋଇ ପିଇଯାଉଥିଲେ । ଯୁବକ ତାଙ୍କୁ ହଲାଇ ଦେଇ କହିଲେ—ଆଜ୍ଞା, କବି କେବଳ ଠିଆ ହୋଇଛନ୍ତି, ପାଖରେ ଗୋଟିଏ ଖଣ୍ଡିଆ ରେକର୍ଡ ବାଜୁଛି, ଖଣ୍ଡିଆ ଥାନରେ ପିନ୍‌ଟା ଦେଉଛି, ଆଗେଇ ପାରୁ ନାହିଁ ସେଇ ନୋଟାଏ ଶବ୍ଦ ବାରମ୍ବାର ଘୋଷୁଛି । ଏଇଟା କବିର କଣ୍ଠନିଃସୃତ ନୁହେଁ, ଖଣ୍ଡିଆ ରେକର୍ଡ ନିଃସୃତ ଶବ୍ଦ । ଆସନ୍ତୁ ପଳେଇବା ।

ପ୍ରୌଢ଼ ଆଁ କରି କିଛି ସମୟ ଯୁବକଙ୍କ ମୁହଁକୁ ଚାହିଁ ରହିଲେ, ତା ପରେ କହିଲେ—ଆପଣ ଭୁଲ ବୁଝିଲେ । ଏହା ହେଉଛି କସରତ କବିତା । ଏହାର ଅର୍ଥ ବୁଝିବାକୁ ଯଥେଷ୍ଟ କସରତ ଦରକାର । ସାତ ତାଳ ପାଣି, ଚଉଦତାଳ ପଙ୍କ, ଅଠାଇଶି ତାଳ ଟାଣ ମାଟି ଭେଦିଲେ ଯାଇ ତାର ଅର୍ଥ ମିଳିବ । କେତେ ମୂଲ୍ୟବାନ, କେତେ ଦୁର୍ବୋଧ ରହସ୍ୟାବୃତ କବିତା । ତାକୁ ଖଣ୍ଡିଆ ରେକର୍ଡ ଗୀତ କହିବା ଫଳରେ ମୋ ହୃଦୟରେ ବେଦନା ଜାତ ହେଉଛି, ଟିକିଏ ଧୈର୍ଯ୍ୟ ଧରନ୍ତୁ, କବି କବିତା ପାଠ ଶେଷରେ ଗୋଟିମାନ୍ଦ ପାଣି, ପଙ୍କ ଓ ଟାଣ ମାଟି ଭିତରୁ ଅର୍ଥ

ଭଲଭାବେ ସେ ଶ୍ରୋତାମାନଙ୍କୁ ଦେଖାଇ ଦେବେ ଆଜ ନଜର ଅସାଧାରଣ ଶକ୍ତିର ପରଚୟ ଦେବେ, ଟିକଏ ଅପେକ୍ଷା କରନ୍ତୁ ।

ବ୍ୟତବ୍ୟସ୍ତ ଓ ବବ୍ରତ ଯୁବକ ଜଣକ କହଲେ—ଆଜ୍ଞା, ମୁଁ ଆଉ ପାରବ ନାହିଁ । ଆପଣ ବସିଥାନ୍ତୁ, ମୁଁ ଯାଉଛ । କହବା ସଙ୍ଗେ ସଙ୍ଗେ ସେ ପଦାକୁ ବାହାର ଆସିଲେ । ରହସିବାଟା ଅଭଦ୍ରତା ହେବ ଭାବ ପ୍ରୌଢ଼ ମଧ ବାହାର ଆସିଲେ ।

ଗୋଟାଏ ହୋଟେଲରେ ଲୁଚ କୋବଭଜା ଦୁହେଁ ଖାଇଲ ବେଳେ ପ୍ରୌଢ଼ କହଲେ—ଆମେ ଦୁଜଣ ସିନା କବତା ପାଖରେ ଏକାଠି ରହପାରଲୁ ନାହିଁ । ହେଲେ କୋବଭଜା ପାଖରେ ଏକାଠି ରହପାରଲୁ ।

—✳—

# ସାହିତ୍ୟମାରୁର ସପକ୍ଷରେ

ସାହିତ୍ୟ ସଭାମାନଙ୍କରେ ମାରୁଙ୍କ ଦାସଙ୍କ ଉପସ୍ଥିତି କ୍ରମେ କ୍ଷୀଣରୁ କ୍ଷୀଣତର ହୋଇ ଶେଷରେ ଏକାବେଳକେ ବନ୍ଦ ହୋଇଗଲା । ତାଙ୍କର ଅନୁପସ୍ଥିତି ସମସ୍ତେ ଅନୁଭବ କଲେ । ଅନୁଭବ କରିବାର କାରଣ ମଧ୍ୟ ଯଥେଷ୍ଟ ଥିଲା । କି ସଭାରେ ଅନ୍ୟ ସାହିତ୍ୟିକମାନଙ୍କୁ ଓଜସ୍ୱିନୀ ଭାଷାରେ ଗାଳିଗୁଲଜ କରିବାର ବିପୁଳ ଦକ୍ଷତା ତାଙ୍କ ଭଳି ଅନ୍ୟ କାହାରି ନଥିଲା । ସେ ମଞ୍ଚ ଉପରକୁ ଉଠିଲେ ସାମାନ୍ୟ ଭୟ ଲାଗିଥିବା ସାହିତ୍ୟିକମାନଙ୍କୁ ଛନିଆ ଦେଗ ପଡ଼ିଥିଲା । କେହି କେହି ମନେ ମନେ ଇଷ୍ଟଦେବତା ସ୍ମରଣ କରୁଥିଲେ । ଯଃ ପଲାୟତି ସଃ ଜୀବତି ନ୍ୟାୟରେ କେହି କେହି ସଭାସ୍ଥଳ ପରିତ୍ୟାଗ କରୁଥିଲେ ଏବଂ ତତ୍ପରଦିନ କ'ଣ କ'ଣ ଅସ୍ତ୍ର ତାଙ୍କ ଉପରକୁ ନିକ୍ଷିପ୍ତ ହୋଇଥିଲା ତାର ବିବରଣୀ ସେ ଦିନ ସଭାକୁ ଯାଇଥିବା ବନ୍ଧୁମାନଙ୍କଠାରୁ ସଂଗ୍ରହ କରୁଥିଲେ । ମାରୁଙ୍କ ଦାସଙ୍କର ଅସାଧୁ ସାହିତ୍ୟିକମାନଙ୍କ ଉପରେ ଏପରି ଅବିଶ୍ରାନ୍ତ ଆକ୍ରମଣ ଦେଖି ବହୁ ନିରପେକ୍ଷ ଶ୍ରୋତା ମତଦେଇଥିଲେ ଯେ ମାରୁଙ୍କ ଦାସେ ଯଥାର୍ଥରେ ଉତ୍କଳ ଭାରତୀଙ୍କ ଏକ ଟାଣୁଆ ଭଣ୍ଡାରି ବା ଭଣ୍ଡାର ରକ୍ଷକ । ତାଙ୍କ ଭଣ୍ଡାର ଘରେ ପଶି ଯଦି କୌଣସି ଅସାଧୁ ସାହିତ୍ୟିକ ବଦ୍‌ନିୟତ୍ କାର୍ଯ୍ୟ କରେ ତେବେ ସେ ସାହିତ୍ୟ ସଭାରେ ତାଙ୍କୁ ଏପରି ଗୋଗଛବାଡ଼ିଆ କରନ୍ତି ଯେ ସେ ସାହିତ୍ୟ କରିବା ତ ଦୂରର କଥା, ସାହିତ୍ୟ ସଭାକୁ ମଧ୍ୟ ଯିବାକୁ ଭୟ କରେ । ସାହିତ୍ୟକୁ ସଲାମ ବଜାଇ ଗୋଟାଏ ରାଜନୈତିକ ଦଳର ସଭ୍ୟ ହୁଏ । ସାହିତ୍ୟିକମାନଙ୍କର ସାତପୁରୁଷିଆ ଶ୍ରାଦ୍ଧ କରେ ।

ମାରୁଙ୍କ ଦାସଙ୍କର ସାହିତ୍ୟ ସଭାମାନଙ୍କରୁ ହଠାତ୍ ଏପରି ଉଭାନ ହୋଇଯିବାଟା ସବୁଠାରୁ ବେଶି ଆଶ୍ଚର୍ଯ୍ୟ କରିଥିଲା ହୋସେନ୍ ରବି ଗାନ୍ଧିଙ୍କୁ । ତାଙ୍କର ତ ଦେହ ଅସୁସ୍ଥ ହୋଇନି । ଏତକ ହୋଇଥିଲେ ଏପରିକି ଦି ଚାରିଟା ଛିଙ୍କ ପଡ଼ିଥିଲେ ତାଙ୍କଦ୍ୱାରା ଖାଣ୍ଟି ଜଡ଼ାତେଲରେ ଜୁଡ଼ୁବୁଡ଼ୁ ହୋଇଥିବା ସମ୍ପାଦକମାନଙ୍କର ଖବର କାଗଜରେ ବାହାରିଥାଆନ୍ତା ଯେ କବି ମାରୁଙ୍କ ଦାସ ଏବେ ଗୁରୁତର ଭାବରେ ଅସୁସ୍ଥ ହୋଇପଡ଼ି ତାଙ୍କର ଶଇତାନ ବଜାରସ୍ଥ ବାସଭବନରେ ବିଶ୍ରାମ କରୁଅଛନ୍ତି । ତାଙ୍କର ଚିକିତ୍ସକମାନେ ଆଜିଠାରୁ ସାତଦିନ ଯାଏ ତାଙ୍କ ସହିତ ଦେଖା ସାକ୍ଷାତ ବା କଥାବାର୍ତ୍ତା କରିବାରୁ କ୍ଷାନ୍ତ ହେବା ଲାଗି ସର୍ବସାଧାରଣଙ୍କୁ ନିବେଦନ କରିଅଛନ୍ତି । ତାଙ୍କର ଆଶୁ ଆରୋଗ୍ୟ ପାଇଁ ଶ୍ମଶାନ କାଳୀଙ୍କ ନିକଟରେ ଅଖଣ୍ଡ ଦୀପ ଜଳା ହେବାର

ବ୍ୟବସ୍ଥା ଜନସାଧାରଣଙ୍କ ପକ୍ଷରୁ କରାଯାଇଛି,—ନାହିଁ ଏପରି ଖବର କୌଣସି ଖବର କାଗଜ ଏପରିକି ସତକଥାରେ ମଧ୍ୟ ବାହାରି ନାହିଁ । ହୁସେନ୍ ଭାଇ ଗାନ୍ଧିଙ୍କ ମନଟା ଗୋଳେଇ ଘୋଳେଇ ହେବାକୁ ଲାଗିଲା । ଶେଷରେ ସେ ସ୍ଥିର କଲେ ସନ୍ଧ୍ୟାବେଳେ ତାଙ୍କ ବସାକୁ ଯାଇ କଥାଟା କଅଣ ତାର ସରଜମିନ୍ ତଦନ୍ତ କରିବାକୁ ହେବ ।

ସନ୍ଧ୍ୟାବେଳେ ହୁସେନ୍ ଭାଇ ଗାନ୍ଧି ମାଷ୍ଟ୍ରଙ୍କ ବାସାଘରକୁ ଯାଇ ଦେଖିଲେ ସେ ଗୁମ୍ ହୋଇ ଖଟ ଉପରେ ବସିଛନ୍ତି । ତାଙ୍କ ଧ୍ୟାନ ଭଙ୍ଗ କରାଇ ପଚାରିଲେ— କି ମାଷ୍ଟ୍ର ତୋର କଅଣ ହୋଇଛି କିରେ ? ତୁ ତ ଏମିତି ଗୁମ୍ ହୋଇ କେବେ ବସୁନା । ସାହିତ୍ୟସଭାମାନଙ୍କରେ ତୋର ଅନୁପସ୍ଥିତି ଦେଖି ସମସ୍ତେ ଆଶ୍ଚର୍ଯ୍ୟ । କିଏ କହୁଛି ତୁ କୁଆଡ଼େ ଘରଦ୍ୱାର ଛାଡ଼ି ମହେଶ ଯୋଗୀଙ୍କ ଆଶ୍ରମକୁ ଚାଲିଗଲୁଣି । କେହି କେହି କହୁଛନ୍ତି—ମଲାଗଲା ସବୁ ସରିଗଲା । ଉତ୍କଳ ଭାରତୀଙ୍କ କଥାରେ ଏଣିକି ମେଲୁଆ ଗାଈଗରୁ ପଶି କ୍ଷେତ ପୁରାପୁରି ଉଜାଡ଼ି ଦେବେ । ମେଲୁଆ ଗାଈ ଅଟକାଇବାକୁ ତୋ ଛଡ଼ା ଆଉ କେହି ନାହାନ୍ତି । ତାଙ୍କ ବଳ ଆଡ଼କୁ ସବୁ ଉଜୁଡ଼ିଗଲା ଜାଣେ । ତୁ କାହିଁକି ସେ କାମରୁ ଇସ୍ତଫା ଦେଲୁ ?

—ଭାଇ, ମୁଁ ଆଉ ସେ କ୍ଷେତଜଗା କାମ କରିପାରିବି ନାହିଁ ।

—କାହିଁକି କରିବୁନି ?—

—ମୋ ହାତ ଭାଙ୍ଗି ଯାଇଛି ।—

—ତ ହାତରେ ତ କୁଣ୍ଢେଇ ହଉଛୁ, ମାଛ ଅଡ଼ାଉଛୁ ଭାଙ୍ଗିଛି ବୋଲି କହୁଛୁ କେମିତି ? କଅଣ ହୋଇଛି କହୁନୁ । ମୁଁ ତାର ଗୋଟାଏ ସାରଭଙ୍ଗ କରିଦେବି, ଏ ସବୁ ପଲାଷ୍ଟନପନ୍ଥୀଙ୍କ କାମ, କଅଣ ହୋଇଛି କହ—

ବନ୍ଦେ ଭଣ୍ଡ ମୋ[ଡ଼] ହୋଇ ମାଷ୍ଟ୍ର ଧୀରେ କହିଲେ—ଭାଇ ବଡ଼ ଲାଜର କଥା, ଅଥାନରେ ବଥ ହେଲେ ଦେଖି ହସନ୍ତି କି ଦେଖେଇ ହୁଏ ନା । ଟାଳି ତୁ ମୋର ଅତି ଆପଣାର ସାଙ୍ଗ ହୋଇଥିବାରୁ ତୋତେ କହିବାକୁ ସାହସ କରୁଛି ।—

ହିଁ ହିଁ କହ, କିଛି ପରବାୟ ନାହିଁ, କହ ।—

—ମୁଁ ସମସ୍ତଙ୍କୁ ଯେଉଁ ଷ୍ଟେର କାଣ୍ଡିଆରେ ଧରି ଅନ୍ୟମାନଙ୍କୁ ଅପଦସ୍ତ କରୁଥିଲି, ଏବେ ସେହି ଷ୍ଟେର କାଣ୍ଡିଆରେ ପଡ଼ିଯାଇଛି । ମୁଁ ଭାବୁଥିଲି କେହି ଧରି

ପାରିବେନି । ହେଲେ ଗୋଟାଏ ଅପଛନ୍ଦିଆ ମୋତେ ପକ୍କଡ଼ି ପକାଉଛି । ମୋତେ ଏକାବେଳକେ ଲଙ୍ଗଳା କରିଦେଇ ପଦାରେ ଠିଆ କରିଦେଇଛି । ଲାଜରେ ତ ମୁଁ ମୁହଁ ଟେକିପାରୁନି, ସଭ୍ୟ ସମିତିକୁ ଯିବାର ପ୍ରଶ୍ନ ଉଠୁଛି କୁଆଡ଼ୁ !

—ହଉ ହଉ କଅଣ ହୋଇଛି କହ ।—

—'ବଣୁଆ କୋଇଲି' ପତ୍ରିକାରେ ମୁଁ ଗୋଟାଏ କବିତା ଛପେଇ ଦେଇଥିଲି । ସେ ପତ୍ରିକାଟା କାହାର ନଜରରେ ପଡ଼ିବନି ବୋଲି ଭାବିଥିଲି ।

—କବିତାଟା କଅଣ କହିଲୁ ।—

— ଲେଖିଥିଲି—

"ନୁହେଁ ସଖା ନୁହେଁ ଏହା ନିଆଁ
ଏ ଦେଶ ଅନ୍ଧାର ପାଇଁ ଏହା ଏକ ମଶାଲ ଭଳିଆ
ନୁହେଁ ଏହା ପୋଡ଼ିଯିବା ପାଇଁ
ଜନମିଛି ଏହା ସବୁ କଷ୍ଟ ଦେବାକୁ ଜଳାଇ—"

—ବାଃ ଏ ତ ଏକ ବଢ଼ିଆ କବିତା । ଏଥିରେ ଗଲତି ରହିଲା କେଉଁଠି ?

—ଗଲ୍ତି ନାହିଁ ଯେ ଜଣେ ଅଧ୍ୟାପକ ଗୋଟାଏ ପତ୍ରିକାରେ ଦେଇଛି ଏଇଟା ସଚି ରାଉତରାୟଙ୍କ ଘରେ ସିନ୍ଧି କରି ଚୋରେଇ ଅଣାହୋଇଛି । ଏଇଟା ଦିନ ଦିପହରିଆ ଡକେଇତି କହିବାକୁ ହେବ ।—

—ଆଚ୍ଛା ସଚି ରାଉତରାୟ କଅଣ ଲେଖିଛନ୍ତି ?—

—ସେ ଲେଖିଛନ୍ତି—ନୁହେଁ ବନ୍ଧୁ ନୁହେଁ ଏହା ଚିତା
ନୁହେଁ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି ଜାଳି ପୋଡ଼ି ଦେବାକୁ ଧରାଇ—

ହୁଁ, କେଉଁ ବୁଦ୍ଧୁ କହୁଛି ଯେ ରାଉତରାୟଙ୍କ ଏହି କବିତାଟିକୁ ଚୋରି କରିଛୁ । ଯିଏ ଚୋରି ବୋଲି କହିବ ମୁଁ ତାର ଜିଭ ଘୋଷାଡ଼ି ଆଣିବି । ଜଣେ ଆଉ ଜଣଙ୍କ ଘରୁ ଗୋଟାଏ ମୂର୍ତ୍ତି ଉଠେଇ ନେଇଗଲା । ପୂର୍ବ ଲୋକ ପାଖରେ ଯେଉଁ ମୂର୍ତ୍ତିଟି ଥିଲା ପରଲୋକ ପାଖରେ ସେଇ ମୂର୍ତ୍ତିଟି ଥିବାରୁ ଏବଂ କିଛିହେଲେ ଓଲଟ ପାଲଟ ନଥିବାରୁ ତାକୁ ଚୋରି କୁହାଯିବ । ଯଦି ପର ମଣିଷ ଅବିକଳ ସେମିତିଆ

ମୂର୍ତ୍ତିଟିଏ ଗଢ଼ିଇ ନିଜ ପାଖରେ ରଖିବ କୋଉ ବୁଡ୍‌ବକ୍ ତାକୁ ସ୍ୱେର ବୋଲି କହିବ । ତୁ ତ ସଉଦାଗରଙ୍କ ଖାତାରୁ ସେ କବିତାଟିକୁ ଟେର ନେଇ ଯାଇନୁ । ତୁ ଠିକ୍ ସେମିତିଆ ଆଉ ଗୋଟିଏ କବିତା ତିଆରି କରନ୍ତୁ । ଠିକ୍ ସେମିତିଆ ବ ନୁହେଁ, ବନ୍ଧୁ ଥାନରେ ତୁ ରଖିଛୁ ସଖା । ଚିତା ଜାଗାରେ ରଖିଛୁ ନିଆଁ । ସେ ପୁଣି ଲେଖିଛନ୍ତି ଚିତା । ଚିତା କେବଳ ଶବ ପୋଡ଼େ ଆଉ କାଠ ଭିତରେ ଯେତେ ପୋକ ଜୋକ ଥାଆନ୍ତି ତାକୁ ପୋଡ଼େ । କିନ୍ତୁ ତୁ ଲେଖିଛୁ ନିଆଁ । ଏହା ଦେଶର ଅନ୍ଧାରକୁ ଦୂର କରିଦେବା ପାଇଁ ଏକ ମଶାଲ । ଯିଏ ତୋତେ ସ୍ୱେର ବୋଲି କହୁଛି ତା କାନ ଧରି ତାକୁ ପଚାରିବୁ କାହିଁକି କହିଲୁ ସ୍ୱେର, ପ୍ରମାଣ ଦେ । ଦଫା କାଢ଼ି ଦେଖା । ତାର ଚିତା ଶବ, ପୋକ-ଜୋକ, ଝିଣ୍ଟିକା ପୋଡ଼ିଲା । ତୋ ନିଆଁ ମଶାଲ ହୋଇ ଅନ୍ଧାରକୁ ଗେଟ୍ ଆଉଟ୍ କରିଦେଲା । ତା ଲେଖାଟା ନିଶ୍ଚୟ ଉଦ୍ଦେଶ୍ୟମୂଳକ, ଚରଣ ସହାରକ, କପୋଳକଳ୍ପିତ, ଅବାସ୍ତବ ।

ସେ କଥାରେ ଝିଣ୍ଟି ପଞ୍ଜି ନୋଟ ବହିଟା ପକେଟରୁ କାଢ଼ି ଦେଖିଲେ ଓ ପୁଣି କହିଲେ—ହଁ, ଏହା ଅଭିସନ୍ଧିମୂଳକ, କାଳେ ତୁ ବିଧାନସଭା ସଭ୍ୟ ହେବାକୁ ପ୍ରାର୍ଥୀ ପାଇଁ ଉଦ୍ୟମ କରିବୁ, ସେଥିଲାଗି ଏହା ଆଗରୁ ଏକ ସତର୍କତାମୂଳକ ପ୍ରତିଷେଧକ ବ୍ୟବସ୍ଥା । ମାରୁଦାସେ କହିପକାଇଲେ—ନା-ନା ଏଇଟା ଅବଶ୍ୟ ଠିକ୍ ନୁହେଁ । ମୁଁ ଆଇ କଂଗ୍ରେସ, ସେ ମଧ୍ୟ ଆଇ କଂଗ୍ରେସ ଏଥିଲାଗି କଳି ହେବନି ।

—ହା ଓଲି ଦୁଜଣ ଅଇ ହୋଇଥିବାରୁ ତ କଳି ହେଉଛି । ଜଣେ ଅଜା ଜଣେ ଥାଇ ହୋଇଥିଲେ ଏହା ହୋଇ ନ ଥାନ୍ତା । ହଉ ଯାହା ହେବାର ହେଲାଣି, ତୁ ଗୋଟାଏ ସଫେଇ ଲେଖିଦେ । କାଗଜରେ ମୁଁ କଢ଼େଇଦେବି ।—

—ମୁଁ ଅରେ ମୌଳିକ ପ୍ରତିବାଦ କଲିବୁ ଜଣେ ବାଘପର ଉଠ କହିଲ-ସ୍ୱେରପେ ଦିନା ଜୋର, ସ୍ୱେରକର ପୁଣି ମୁହଁ ଟାଣ ଦେଖାଉଛି—ଏମିତ କେତେ କଥଣ । ଲେଖିଲେ ଆଉ ବାକି ରହିବ । ସମସ୍ତେ ମୋତେ ମାଡ଼ିବସି ତୋଟିରୁ ହଲଲ୍ କରିଦେବେ । ସଫେଇ ଭାଷା ମୋର ପଇଟିବ ନାହିଁ । ଆଉ ବ ଗୋଟାଏ କିଛୁ ଲେଖି ଧୂଆଁ ବାଣ ନ ମାରିଲେ ମୁଁ ଆଉ ପଦାରେ ମୁହଁ ଦେଖାଇ ପାରିବିନି । ମୁଁ ସ୍ୱେର କରିଥାଏ ବା ନଥାଏ ସମସ୍ତେ ଏହାକୁ ସ୍ୱେର ବୋଲି କହୁଛନ୍ତି । ମୁଁ କଥଣ କହୁ ଲେଖିବି ଏଇଟା ସ୍ୱେର ନୁହେଁ—

—ଆରେ ହଜାରେ ଓଲୁଙ୍କ ମୁହଁରୁ ଗୋଟାଏ ବ ପଣ୍ଡିତିଆ କଥା ବାହାରିବନି । ସ୍ୱେର କଥାଟା ଛାଡ଼ିଦେଇ ପଣ୍ଡିତିଆ ଭାଷାରେ କେହି ନ ବୁଝିବା ଭଳି

ଗୋଟାଏ ମହାଭାରତଠୁ ପ୍ରବନ୍ଧ ଲେଖିଦେଲେ କାମ ଫତେ । ସମସ୍ତେ ପାଣ୍ଡିତ୍ୟପୂର୍ଣ୍ଣ ଲେଖା ପଢ଼ି ପଢ଼ି ସ୍ୱେରଂଥା ପାଶୋର ପକେଇବେ । ସବୁଟା ପଢ଼ିବାକୁ କାହାର ଧୈର୍ଯ୍ୟ ରହିବ ନାହିଁ । ଶେଷରେ ଠିକ୍ କଲେବ—ସ୍ୱେରନାଶକ ତଥ୍ୟ ସବୁ ଶେଷ ଆଡ଼କୁ ରଖାଯାଉଛି । ଏମିତିଆ ପାଣ୍ଡିତ୍ୟପୂର୍ଣ୍ଣ ଲେଖା ଯିଏ ଲେଖୁଛି ସିଏ କେବେ ସ୍ୱେର ଭରିବ । ମୁଁ ଭାବୁଛି ତୁ ଲେଖ ।

ପେଟେ ପେଟେ ଜଳଖିଆ ଓ ଚାହା ପରେ ଲେଖା ଆରମ୍ଭ ହେଲା । ସୁଦେନ୍ ସାହେବ ଭାବିଲେ—ଅଲଗ-ଚରାଚର ଜଗତର ଉତ୍ପତ୍ତି ଓ ସ୍ଥିତିର ହେତୁ ସ୍ୱରୂପ ତରଣିନାରାୟଣ ସ୍ୱୀୟ ରଶ୍ମିଜାଳ ବିକିରଣ କରି ଏହି ଜଗତ ସୃଷ୍ଟି ଏବଂ ପାଳନ କରୁଅଛନ୍ତି । ତରୁଣୀମାନଙ୍କ ରଶ୍ମି ଆହରଣ କରି ସ୍ଥାବର ଓ ଜଙ୍ଗମ ଆଦି ସର୍ବବିଧ ଜୀବ ଜୀବନ ଧାରଣ କରି ଲୀଳାମୟ ଜଗତ୍‌ପିତାଙ୍କ ଲୀଳାରେ ଆବଶ୍ୟକୀୟ ଅଂଶଗ୍ରହଣ କରୁଅଛନ୍ତି ।

ଅଂଶୁମାଳୀଙ୍କ ରଶ୍ମି ବର୍ଷଣରୁ ଜୀବ ଅଂଶଗ୍ରହଣ କରି ସ୍ୱୀୟ ପୁଷ୍ଟିସାଧନ ପୂର୍ବକ ଜଗତର କଲ୍ୟାଣ ମାଧ୍ୟମରେ ବ୍ରତୀ ହୋଇଅଛନ୍ତି । ପାଦପ ଲତା ଗୁଳ୍ମାଦି ସ୍ଥାବର ଜୀବଗଣ ଇହ ରଶ୍ମିକୁ ଖାଦ୍ୟରେ ପରିଣତ କରି ଜଙ୍ଗମର ଜଠରଜ୍ୱାଳା ନିବାରଣ କରୁଅଛନ୍ତି । ବିଶ୍ୱନିୟନ୍ତା ଲୀଳାମୟଙ୍କ ଏ ଅବର୍ଣ୍ଣନୀୟ କୃପାକୁ ଗୋପନ କରିଣି ଅକାଶନର ବର୍ଣ୍ଣନା ପଙ୍ଗୁର ଗିରିଲଙ୍ଘନ ସଦୃଶ । ପ୍ରାଚ୍ୟ ପଣ୍ଡିତଗଣ ବହୁ ସହସ୍ର ବର୍ଷ ପୂର୍ବରୁ ଏହା ଉପଲବ୍ଧି କରି ଅରୁଣୋଦୟ କାଳରେ କୃତାଞ୍ଜଳିପୁଟରେ ଉଦକ ଦାନ-ପୂର୍ବକ ସ୍ତବ କରୁଥିଲେ—ଓଁ ନମୋ ସବିତେ ଜଗଦେକ ଚକ୍ଷୁଷେ ଜଗତ୍ ପ୍ରସୂତ, ସ୍ଥିତ ନାଶହେତବେ……

ମାରୁଦାସଙ୍କ ଆଙ୍ଗୁଠି କେମା ହୋଇ ଆସିଲା । ଘଣ୍ଟା ଦେଖି ଜାଣିଲେ ବଜର ଦୁଇଘଣ୍ଟା ବିତିଗଲାଣି । ଆନନ୍ଦରେ କହିଉଠିଲେ ଏଥିରେ ଅଦ୍ଭୁତ କିଛି ସାରୁତ୍ ହୋଇଗଲା । ସୂର୍ଯ୍ୟଙ୍କ କିରଣ ସମସ୍ତେ ଆହରଣ କରି ନିଜର ଓ ଅନ୍ୟର ଉପକାରରେ ଲଗାନ୍ତି । ସେହିପରି ଜଣେ ଜ୍ୟୋତିଷ୍ମାନ୍ କବିର କବିତା ଗ୍ରହଣ କରି ତହିଁରୁ ଆଉ ଗୋଟିଏ କବିତା ତିଆରି କରି ପାଠକମାନଙ୍କୁ ଦେବା କିଛି ଖରାପ କଥା ନୁହେଁ । ଏଥିକରେ ଚଳିବ ?—

—ଧେତ୍ ତୁଣ୍ଡା ଆହୁରି ବିଦ୍ଭୁତ କିଛି ଅଛି । ଏଠି ମୂଳ କବିଙ୍କୁ ସୂର୍ଯ୍ୟଙ୍କ ସଙ୍ଗେ ତୁଳନା କରି ଆଗୁକରି ଦେଲେଇ ଦେଲା କାହିଁକି ?

—ମୁଁ ଜାଣିପାରୁନି ତୁ କହ—

—ହୁଁ ଘ୍ୱା ଭିତରେ ଟିକିଏ କୁଟମାଡ଼ ପୂରେଇ ଦେଇଛୁ । ତେଲ ଫଳରେ ସେ କବି ଆମ ତରଫ ହୋଇଯିବେ । କଥା ପଡ଼ିଲାବେଳେ ସେ ଝଲବନ୍ତ୍ କହିବେ—ନା-ନା, ଏହାକୁ ସ୍ୱେଶ କୁହାଯାଇ ପାରିବ ନାହିଁ, ଏତେବଡ଼ କବିଙ୍କ କଥାରେ କିଏ ପ୍ରତିବାଦ କରିବ ।

—ତେବେ ଏତିକରେ ଥାଉ—

—ନା-ନା, ତତେ ଯେଉଁ ଅଧ୍ୟାପକ ସ୍ୱେର ବୋଲି କହୁଛୁ ତାଠାରୁ ତୋର ପାଣ୍ଡିତ୍ୟ ବେଶି ବୋଲି ଦେଖେଇ ନ ଦେଲେ କଥାଟା ବିଗିଡ଼ିଯିବ । ସ୍ୱୀହା ଜଳଖିଆରେ ଟିକିଏ ମନ ତାଜା କରିନେଇ ଲେଖା ପୁଣି ଆରମ୍ଭ କରିବା—

ଚଙ୍ଗା ହୋଇଯିବା ପରେ ହୁସେନ୍ ସାହେବ ପୁଣି ଡାକଲେ—ଲେଖ । ଅଧ୍ୟାପକ ମହାଶୟ ଯେ ସ୍ୱତଃପ୍ରବୃତ୍ତ ହୋଇ ଏ ଅକିଞ୍ଚନ ଉଦରକୁ କର୍ଦ୍ଦମ ନିକ୍ଷେପ କରିଅଛନ୍ତି ଏହା ଅବିଶ୍ୱାସ୍ୟ । ମୋ ପ୍ରତି ଅସୂୟାଗ୍ରସ୍ତ ତାଙ୍କର ପରିଷ୍ଟ କର୍ମସ୍ୱାଙ୍କ ପ୍ରବହମାନ ପ୍ରରୋଚନା ସ୍ରୋତସ୍ୱିନୀରେ ଅବଗାହନ କରି ସେ ଏପରି କର୍ଦ୍ଦମ ନିକ୍ଷେପ କରିବାକୁ ବାଧ୍ୟ ହୋଇଅଛନ୍ତି । ଏହି ଅକିଞ୍ଚନ ସଂସ୍କୃତ, ଓଡ଼ିଆ, ବଙ୍ଗାଳୀ, ହିନ୍ଦୀ, ମରାଠି, ଉର୍ଦ୍ଦୁ, ଆସାମୀ, ତେଲୁଗୁ, ତାମିଲ, କନ୍ନଡ଼, ସିନ୍ଧି ଓ ଇଂରାଜୀ ଆଦି ଦ୍ୱାଦଶ ଗୋଟି ଭାଷା ସମ୍ପୂର୍ଣ୍ଣରୂପେ ଆୟତ୍ତ କରିଅଛି—

—ଏଁ ଏଁ ଏଇଟା କେମିତି ଲେଖିବ । ଓଡ଼ିଆ ଇଂରାଜୀ ଛଡ଼ା ତମୋତେ ଆଉ କିଛି ଜଣାନାହିଁ । ଇଂରାଜୀ ବି ଧାଡ଼ିଏ ଶୁଦ୍ଧ ଲେଖିପାରିବି ନାହିଁ ।—

—ଚୁପ୍ କର୍ । କେହି ତୋତେ ପଚାରିବାକୁ ଆସିବେ ନାହିଁ, ଆମ ଲୋକେ ଚଟାପଟ ନେତାମାନଙ୍କ କଥାରେ କେମିତି ବିଶ୍ୱାସ କରିଯାଉଛନ୍ତି, ସେମିତି ତୋ କଥାକୁ ବିଶ୍ୱାସ କରିଯିବେ । ଯେବେ ବା ଯଦି ଜଣେ ଅଧେ ଖେଚଡ଼ା ଟୋକା ଆସି ତୋତେ ପଚାରିବ ତେବେ କହିଦେବୁ—ରେ ଅର୍ବାଚୀନ ଯୁବକ, ତୁମ୍ଭ ନିକଟରେ ପରୀକ୍ଷା ଦେବାକୁ ଅସମର୍ଥ । ବାସ୍ ଏତିକରେ ସୁଅ ବାଟ ପଚାରି ପିଡାଘର ଯିବ । ମୁଁ ଯାହା ଡାକୁଛି ଲେଖିଯା, ହୁଁ—ସର୍ବଶେଷ ଏ ଅକିଞ୍ଚନ ଅବଲୋକନ କରିଅଛି ଯେ କବିଗଣ ପୂର୍ବ କବିଗଣଙ୍କର ଅମର କୃତିକୁ ଆତ୍ମସ୍ଥ କରି ଉପାଦେୟ କବିତା ରଚନାରେ ବ୍ରତୀ ହୋଇଅଛନ୍ତି । ଅସୂୟାଗ୍ରସ୍ତ ମୂର୍ଖ ଅଧ୍ୟାପକଙ୍କ ପ୍ରତି ଏ ଅକିଞ୍ଚନର ଅଣୁମାତ୍ର କ୍ରୋଧର

ଉଦ୍ରେକ ହୋଇ ନାହିଁ । ତାଙ୍କପରି ଜଣେ ମହାନ୍ ରସଗ୍ରାହୀ ମୁଖ୍ୟ ଅଧ୍ୟାପକ ସାମାନ୍ୟତମ ଉଦ୍ୟମ କଲେ ହୃଦୟଙ୍ଗମ କରିପାରିବେ ଯେ ଏକ କବିତାର ଆଶ୍ଚର୍ଯ୍ୟ ସୌନ୍ଦର୍ଯ୍ୟ ପଦବାଚ୍ୟ ନୁହେଁ, ଏହାକୁ ଅସ୍ୱୀକାର କଲେ ପ୍ରାତଃସ୍ମରଣୀୟ କବି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ବଳଦେବ, ରାଧାନାଥ ଆଦି ଜ୍ୟୋତିଷ୍କଗଣ ଏବଂବିଧ ଲାଞ୍ଛନାର ଟିକା ମସ୍ତକରେ ବହନ କରିବାକୁ ବାଧ୍ୟ ହେବେ……।

ଦୁହେଁ ଘଣ୍ଟାକୁ ଦେଖିଲେ, ରାତି ବାର । ହୁସେନ୍ ରବି ଗାନ୍ଧି କହିଲେ—ବାସ୍ ଏତିକି ଯଥେଷ୍ଟ । ଏହାର ଅର୍ଥେ ବି କେହି ପଢ଼ି ପାରିବେ ନାହିଁ, ହାଇ ମାଡ଼ି ଆସିବ । ଶୁଣିଲାବାଲା ଶୋଇପଡ଼ିବ । ଯେଉଁ ବୁଢ଼ାହାଡ଼ା କେଇଜଣ ଏହାକୁ ଢୋଳେଇ ଢୋଳେଇ ପଢ଼ିବେ ସେମାନେ ମତ ଦେବେ—'ଏତେବଡ଼ ଗୁଣୀ ଲୋକ କଅଣ ବାଜେକଥା ଲେଖିଛି ।' ଆଉ ଦେଖ ଯିଏ ତୋତେ ବିଦ୍ରୂପ କରି 'ସାହିତ୍ୟମାରୁ' ବୋଲି କହିବ ତୁ ତାକୁ କହିବୁ ଆରେ ବେଆଦବ, 'ସାହିତ୍ୟମାରୁର ସଙ୍ଗେଇ ପଢ଼ିଥାର, ତାପରେ ଯୋଡ଼ ଖୋଲିବୁ ।'



# ଉଲଟପାଲଟ କବି

ଗୋବର୍ଦ୍ଧନଙ୍କ ମାତା ବିଦୂଷୀ ପାର୍ବତୀଦେବୀଙ୍କୁ ଯଦି ପାର୍ବତୀଦେବୀ, ପାର୍ବତୀଦେବୀ ବୋଲି ନ ଡାକି ସବୁଦିନେ ଗୋବରା ମାଆ, ଗୋବରା ମାଆ! ବୋଲି ଡକାଯାଏ ତେବେ ତାଙ୍କର ମାନସିକ ଅବସ୍ଥା ଯେପରି ହେବ କବିମାନଙ୍କର ମାନସିକ ଅବସ୍ଥା ଠିକ୍ ସେହିପରି ହେଲା । ରୀତିକବି ରୀତିକବି, ସତ୍ୟବାଦୀ କବି ସତ୍ୟବାଦୀ କବି, ସବୁଜ କବି ସବୁଜ କବି, ବିପ୍ଳବୀ କବି ବିପ୍ଳବୀ କବି, ଆଧୁନିକ କବି ଆଧୁନିକ କବି, ଜାତୀୟ କବି, ଜାତୀୟ କବି ଡାକ ଶୁଣି ଶୁଣି ବିରକ୍ତ ହୋଇଗଲେ । ଠିକ୍ ହେଉ ଭୁଲ ହେଉ ସବୁଦିନେ ଗୋଟାଏ କଥା ଶୁଣିବାକୁ ଭଲ ଲାଗେନା । ଗୋଟିଏ ଗୀତର ରେକର୍ଡ଼ ନିତ ଯଦି ବର୍ଷେଯାଏ ବଜାଯାଏ, ତେବେ ଶୁଣିଲାବାଲା ଏତେ ବିରକ୍ତ ଓ ଉତ୍ୟକ୍ତ ହୋଇପଡ଼ିବ ଯେ ସେ ଗୋଟାଏ ବଡ଼ ହାତୁଡ଼ି ଆଣି ଗ୍ରାମୋଫୋନ୍ ମିଶା ରେକର୍ଡ଼ ଉପରେ ଏକ ବ୍ରହ୍ମ ପାହାର ଦେଇ ମସିଗୁଣ୍ଡା କରିଦେବ । ସବୁଦିନେ କେହି ରସଗୋଲା ଖାଇବାକୁ ଭଲ ପାଇଲାଣି ନା ପାଇବ । ଠିକ୍ ଏହିପରି କବିମାନେ ଖାଲି ନାଆଁଟାକୁ ଶୁଣିବା ମାତ୍ରେ ଡେଇଁଲେ, ନାକ ଟେକିଲେ । ଥୁ ଥୁ କରି ଛେପ ପାଟିରୁ କାଢ଼ିଲେ । ନିର୍ବାଚନ ବେଳେ ବୁଢ଼ିଆଙ୍କେ ଯେପରି ଲୋକେ ମନ୍ଦା ମନ୍ଦା ହୋଇ ଚର୍ଚ୍ଚା କରୁଥାନ୍ତି, ବିରକ୍ତ କବିମାନେ ମନ୍ଦା ମନ୍ଦା ହୋଇ ଚର୍ଚ୍ଚା ଚଳାଇଲେ । ଜଣେ କବି ଗୋଟିଏ ମନ୍ଦାରେ ଅତି ଭାବବିହ୍ୱଳିତ ହୋଇ କହି ଉଠିଲେ—କାଲି ରାତିରେ ମୁଁ ସ୍ୱପ୍ନ ଦେଖିଲି କବି ଉପେନ୍ଦ୍ର ଭଞ୍ଜ ସ୍ୱର୍ଗରୁ ଓହ୍ଲାଇ ମୋତେ କହୁଛନ୍ତି—ହଇରେ, ମୋର କ'ଣ ଆଉ କିଛି ପରିଚୟ ନାହିଁ । ମୁଁ ଖାଲି ସେହି ରୀତିକବି । ଶହଶହ ବର୍ଷ ଧରି ସେହି ପଦ ଶୁଣି ଶୁଣି ମୋ ମନ ଚଟା ଧରି ନେଲାଣି । କାହିଁକି ମୋତେ ବୈଦେହୀଶବିଳାସ କବି କହିଲେ କ'ଣ ଖରାପ ହୁଅନ୍ତା ? କିଛି ନ ହେଲେ ମୋତେ ଲାବଣ୍ୟବତୀ କବି କହିଲେ ଚଳନ୍ତା । ସମାଲୋଚକମାନଙ୍କର ମଥା ସେହି 'ରୀତିକବି' ପଦରେ ଭରପୂର, ଆଉ କିଛି ଗୋଟାଏ ତାଙ୍କ ପଇଁଟ୍ ନାହିଁ । ଛି ଛି, ସମାଲୋଚକ-ଗୁଡ଼ାକ ପାଦେ ବି ଆଉ ଆଗେଇ ପାରୁନାହାନ୍ତି । କି ଥିଲା ଏ ରାଜ୍ୟ, କି ହୋଇଛି ଆଜି । ଏତିକି କହି ସେ କାନ୍ଦି ପକାଇଲେ । ସମସ୍ତେ ପୂର୍ବ ବକ୍ତାଙ୍କ ପରି ଭାବବିହ୍ୱଳିତ ହୋଇ କହିଉଠିଲେ—

ହିଁ ହିଁ ସତକଥା । ଏହାର ଗୋଟାଏ କିଛି କିନାରା କରିବାକୁ ହେବ, କବିମାନଙ୍କର ପ୍ରକାର ଭେଦକୁ ବଦଳାଇବାକୁ ହେବ ।

ନୂଆ ଧାରାରେ ନାମକରଣ କରିବାକୁ ହେବ । ଏପରି ନୂଆ ନାମକରଣ ପାଇଁ ପ୍ରାୟ ସବୁ ଗୋଷ୍ଠୀର କବିମାନେ ଏକମତ ହୋଇଗଲେ । ଏ କାର୍ଯ୍ୟ ପାଇଁ ଗୋଟାଏ ଟାଣୁଆ କମିଟି ଗଠିତ ହୋଇଗଲା । ଏ କମିଟିରେ କାର୍ଯ୍ୟ ପଦ୍ଧତି କପରି ଭାବରେ କରାଯିବ ତାର ଘମାଘୋଟ ଆଲୋଚନା ହେଲା । ଜଣେ କହିଲେ,କବିଙ୍କ ନାମାନୁସାରେ ଗୋଷ୍ଠୀର ନାମକରଣ କରାଯାଉ; ଯଥା—ଉପେନ୍ଦ୍ରଭଞ୍ଜ ଗୋଷ୍ଠୀ, ଦୀନକୃଷ୍ଣ ଗୋଷ୍ଠୀ, ଅଭିମନ୍ୟୁ ଗୋଷ୍ଠୀ, ଗୋପାଳକୃଷ୍ଣ ଗୋଷ୍ଠୀ ଇତ୍ୟାଦି । ଆଉ ଜଣେ ତାର ପ୍ରତିବାଦ କରି କହିଲେ—

ହେ ହେଃ, ଏଇଟା ଗୋଟା ଅବାସ୍ତବ କଥାଟା । ଏମିତି କଲେ ଅସଂଖ୍ୟ ଗୋଷ୍ଠୀ ସୃଷ୍ଟି ହେବ । ଓଡ଼ିଆ ଛାତ୍ରମାନେ ଏତେଗୁଡ଼ାଏ ଗୋଷ୍ଠୀ ମନେରଖି ନ ପାରି ଆମକୁ ସବୁବେଳେ ଶୋଧିବେ, କହିବେ—ଏ ଗୋଲ୍‌ଅର ନାମକାରକମାନେ ପ୍ରତ୍ୟେକ ବରକୋଳିଆ ଗୋଲି ଗୋଟିଏ ଗୋଟିଏ ଟାଣି ବାଉଳା ହୋଇ ଏଗୁଡ଼ା କରିଛନ୍ତି । ତେଣୁ ଏ ପଦ୍ଧତି ଭ୍ରାନ୍ତ । ଆଉ ଜଣେ କହିଲେ—ରାଜାରାଣୀଙ୍କ ନାମାନୁସାରେ ଗୋଷ୍ଠୀର ନାଆଁ ହେଉ, ଯଥା ପୁରୁଷୋତ୍ତମ ଗୋଷ୍ଠୀ, କପିଳେନ୍ଦ୍ର ଗୋଷ୍ଠୀ, ଶିବାଜୀ ଗୋଷ୍ଠୀ, ହବାକ୍ ଗୋଷ୍ଠୀ, ହାଥରନ୍ ଲୁଇ ଗୋଷ୍ଠୀ, ଶ୍ରଦ୍ଧାଲାଲ୍ ଗୋଷ୍ଠୀ ଇତ୍ୟାଦି । ଆଉଜଣେ କଥାଟିକୁ କଟ୍ କରି କାଟି କହିଲେ—

ଏପରି ନାମକରଣ କବିମାନଙ୍କ ପ୍ରତି ଅପମାନଜନକ ହେବ । କବିମାନେ ପେଟରେ ଓଦାକନା ପକାଇ ଲେଖିବେ; କିନ୍ତୁ ଶାସକମାନେ ନାଁ ଡକ ମାରିନେବେ ।

ଆଉ ଜଣେ ପ୍ରସ୍ତାବ କଲେ ଯେଉଁ କବିଙ୍କୁ ବହୁକବି ଅନୁସରଣ କରିଥିବେ ସେହି କବିଙ୍କ ନାମରେ ଗୋଷ୍ଠୀର ନାମକରଣ କରାଯାଉ, ଯଥା—ଭଞ୍ଜୁଆ, ରାଧାନାଥିଆ, ଗଙ୍ଗାଧରିଆ, ନନ୍ଦକିଶୋରିଆ, ମାୟାଧରିଆ, ଗଡ଼ନାୟିକିଆ, ସଚ୍ଚିଦାନନ୍ଦିଆ, ରବିସିଂହିଆ, ରମାକାନ୍ତିଆ ଇତ୍ୟାଦି ଇତ୍ୟାଦି, ଏ ପ୍ରସ୍ତାବ ବି କାଟ ଖାଇଗଲା । ଅନେକ କହିଲେ କେତେ ଜଣେ କବି ଓଲିଆ ଖାଇଙ୍କ ପରି ବହୁ କଥାରେ ମୁହଁ ମାରିଛନ୍ତି । ସେମାନଙ୍କୁ କେଉଁ ଗୋଷ୍ଠୀରେ ନେଇ ପୁରେଇବ ଏଗୁଡ଼ା ଠିକ୍ ନୁହେଁ, ଆଉ ଜଣେ କହିଲେ ଯେଉଁ କବିମାନେ ଯେଉଁ ଯେଉଁ ରସର କବିତାମାନ ଲେଖିଛନ୍ତି ତାଙ୍କୁ ସେହି ଗୋଷ୍ଠିଆ ବୋଲି କୁହାଯିବ; ଯଥା—ଶୃଙ୍ଗାର ଗୋଷ୍ଠୀ, ହସକୁରା ଗୋଷ୍ଠୀ, ଖାନ୍ଦୁରା ଗୋଷ୍ଠୀ, ବୀର ଗୋଷ୍ଠୀ ଇତ୍ୟାଦି ଇତ୍ୟାଦି ଉପର କାରଣ ଯୋଗୁ ମଧ୍ୟ ଏ ପ୍ରସ୍ତାବ କାଟ ଖାଇଗଲା । ଯିଏ ସବୁ ରସର କବିତା ଲେଖୁଛି, ତାକୁ ନେଇ କେଉଁ ଗୋଷ୍ଠୀରେ ପୁରାଇବ, ଏହିପରି ସବୁ ପ୍ରସ୍ତାବ କାଟ ଖାଇଗଲା । ଶେଷରେ ସମସ୍ତେ ନେ ବାଟ ଛାଡ଼ିଲେ । ସ୍ଥିର କଲେ ଆଗ କବିତାଗୁଡ଼ିକର ରୂପରେଖ ଠିକ୍ କରିସାରି ସେହି ଭାବ ସୂଚାଉଥିବା ଗୋଟିଏ ନାମ ଦେବାକୁ ହେବ । ବହୁ ତର୍କ ବିତର୍କ ପରେ ତାହା ହିଁ ଗ୍ରହଣ କରାଗଲା ।

ପ୍ରଥମେ ନାମ ଆସିଗଲା ରମଣୀରଙ୍ଗୀ କବି । ତରୁଣୀଟିଏ ଦେଖିଲେ ଏମାନଙ୍କ କଥା ସରିଲା । ଏମାନେ ସେ ରମଣୀଟିର ତାଳୁରୁ ତଳିପାଯାଏ ସବୁ ଅଙ୍ଗର ଶୋଭାବର୍ଣ୍ଣନା କରି ସାରନ୍ତି । ଦ୍ୱିତୀୟ ଦଳ ହେଲେ ଭଗବାନ ଭାଟୁଆ କବି । ସେମାନେ ଖାଲି ଭଗବାନଙ୍କୁ ସ୍ତୁତି କରି ଚାଲିଥାନ୍ତି । ତୃତୀୟ ଦଳ ହେଲେ ସହଜ ସୁନ୍ଦର କବି । ଏମାନଙ୍କ କବିତାଗୁଡ଼ିକ ବଡ଼ ସୁନ୍ଦର ଓ ସର୍ବସାଧାରଣଙ୍କ ବୋଧଗମ୍ୟ । ଚତୁର୍ଥରେ ଗାଉଁଲି ଗୀତୁଆ କବି । ଏମାନେ ଗାଁ ଗଣ୍ଡାର ଚଳିଥିବା ଲୋକଗୀତମାନ ରଚନା କରନ୍ତି । ଗାଳିଗୁଲଜ କବି ଆସିଲେ ପଞ୍ଚମରେ । ଏମାନେ ଭଗବାନଙ୍କ-ଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ସମସ୍ତଙ୍କ ଉପରେ ଗାଳି ବର୍ଷଣ କରନ୍ତି । ଷଷ୍ଠ ଶ୍ରେଣୀର କବି ହେଲେ ମହୁଲି ମାତାଲ କବି । ମାତାଲ ପ୍ରଲାପ କଲେ ଲୋକ ଯେମିତି କେହି କିଛି ବୁଝି ପାରନ୍ତି ନାହିଁ, ଏମାନଙ୍କ କବିତାକୁ ସେହିପରି କେହି ବୁଝି ପାରନ୍ତି ନାହିଁ ।

ସପ୍ତମରେ ଓଲଟପାଲଟ କବି । ଏବେ ଏମିତିଆ ଗୋଟିଏ ନୂଆ କବି ଦେଖାଦେଇଛନ୍ତି, ଏ ବାଟରେ ! ଇଏ ହେଲେ ପ୍ରଥମ ପରେ ହୁଏତ ୟାଙ୍କୁ କେହି କେହି ଅନୁସରଣ କରିପାରନ୍ତି । ୟାଙ୍କ ନାଆଁ ହେଲା ସିଲୋଚନ ଖୋଲ । ମହାଦେବଙ୍କ ପରି ତାଙ୍କର ଲୋଚନ ତିନୋଟି ଏବଂ ସବୁବେଳେ ଖୋଲା । ତାଙ୍କ କବିତାର ଭାବରୁ ତାଙ୍କର ନାମକରଣ ହୋଇଛି କି ତାଙ୍କ ନାମକରଣର ସାର୍ଥକତା ଦେଖାଇବାକୁ ଯାଇ ସେ ତାଙ୍କ ବହିର ନୂଆପ୍ରକାର ନାମକରଣ କରିଛନ୍ତି ତାହା କହିବା କଷ୍ଟକର । ୟାଙ୍କର ଗୋଟିଏ ବହି ଅଛି, ତାର ନାମ 'ଶୀତଳ ସୂର୍ଯ୍ୟ' । ସିଏ ସୂର୍ଯ୍ୟଙ୍କୁ ଧରି ପକାଇଲେ ତାଙ୍କ ହାତ କାଳୁଆ ହୋଇଯାଏ । ଆଉ ଗୋଟିଏ ବହିର ନାମ 'ମରୁ ସାଗର' । ମରୁଭୂମିରେ ସେ ସମୁଦ୍ର ଲହରୀ ଭାଙ୍ଗନ୍ତି । ସେ ଲହରୀରେ ମଧ୍ୟ ବହୁତ ପହଁରନ୍ତି । ଆଉ ଗୋଟିଏ ବହିର ନାମ ଦେଇଛନ୍ତି 'କୃଷ୍ଣ ତାରକା' । ସେ ତାରାର ଆଲୁଅ ତାଙ୍କୁ କଳା କଳା ଦିଶେ । ତାଙ୍କ ବସ୍ତାନିରୁ ଆଉ କେତେ ପାଣ୍ଡୁଲିପିର ନାମକରଣ ଦେଖାଯାଇଛି । ତାହା ହେଲା 'ଉତପ୍ତ ଜହ୍ନ' । ଜହ୍ନକୁ ଛୁଇଁଦେଲେ ତାଙ୍କ ହାତ ପୋଡ଼ିଯାଏ, ହାତ ଫୋଟକା ହୋଇଯାଏ । 'ପର୍ବତର ଗଭୀରତା' ତାଙ୍କର ଅନ୍ୟ ଏକ ପୁସ୍ତକ । ଲୋଏ ଯିନା ପର୍ବତର ଉଚ୍ଚତା ମାପେ ସିଏ ତନୁ ପର୍ବତର ଗଭୀରତା ମାପନ୍ତି । 'ଜୀବନ ଶବ', ଏମିତିଆ ଏକ ଶବ ସହିତ ସେ କଥାବାର୍ତ୍ତା କରିଛନ୍ତି ।

ଏହିପରି ନାମକରଣ ଦେଇ କବି ନିଜର ନାମକୀରଣକୁ ସାର୍ଥକ କରିଛନ୍ତି । ଏହି ଶ୍ରେଣୀ ବିଭାଗ ସମସ୍ତଙ୍କ ମନକୁ ପାଇଗଲା ।

—o—

# ଅଲବତ୍ ସଭାପତି

ଫୁଲମ୍ପୁର ସାହିତ୍ୟ ସମିତିର ବାର୍ଷିକୋତ୍ସବ ପାଇଁ ପ୍ରସ୍ତୁତ କମିଟି ଖୁବ୍ ଉତ୍ସାହପୂର୍ଣ୍ଣ ଭାବରେ ଆରମ୍ଭ ହେଲା । କମିଟିର ସ୍ୱବକାଠି ଜେନାକବ ସଭାସ୍ଥଳରେ ଆସି ପହଞ୍ଚି ନ ଥିବାରୁ ସନ୍ଧ୍ୟାବେଳେ ଗଛ ଉପରେ ଚଢ଼େଇମାନେ ପ୍ରାକ୍ ସଂଗ୍ରାମକାଳୀନ କଚରମିଚର ରଡ଼ିରେ ଥାନଟି ଜମାଉଥିଲା ପରି ସଭ୍ୟମାନେ ଶ୍ରୀରାମଚନ୍ଦ୍ର ଭବନରେ କଚରମଚର ହେଉଥାନ୍ତି । ବାର୍ଷିକୋତ୍ସବ ଉପରେ କଥାବାର୍ତ୍ତା, ପାଟିତୁଣ୍ଡ ବା ହଇହଲ୍ଲା ଅବଶ୍ୟ ଏ ପାଟିତୁଣ୍ଡ ଭିତରେ ପ୍ରାପ୍ତ ନଥାଏ କହିଲେ ଚଳେ । ଏଥିରେ ପରଛିଦ୍ରାନ୍ୱେଷଣ, ୪୦ ପ୍ରତିଶତ ପରକୁତ୍ସାରଟନା, ୩୦ ପ୍ରତିଶତ କେତେକ ବକ୍ତାଙ୍କ ଅଖାଡ଼ୁଆ ପ୍ରଶ୍ନ ପ୍ରସ୍ତାବ ସେମାନଙ୍କୁ କୁହାଇ ନଦେବା ଲାଗି ଷଡ଼ଯନ୍ତ୍ରକରଣ, ୨୦ ପ୍ରତିଶତ ରାଜନୀତି ଓ ସମ୍ପ୍ରତ୍ୟ ଆସନ୍ନା ସରକାରଙ୍କ ଦକ୍ଷତା ଉପରେ ଟିପ୍ପଣୀ, ୧୦ ପ୍ରତିଶତ ଆଲୋଚନା ସମାପ୍ତ ଲାଗି ରହିଥାଏ । କୌଣସି ଗୋଷ୍ଠୀ ଯଦି ଶୁଣ୍ଡ ଘୋଟେଇ ହେଉଥିବା ଦୃଷ୍ଟିରୁ ହେଉ ବା ଦମ୍ଭପ୍ରଦର୍ଶନ ପୂର୍ବକ କିଛି ମୁହୂର୍ତ୍ତ ଗୁଣ୍ଡ-ହେଉଥିଲେ ସେତିକିବେଳେ ଫୁଲମ୍ପୁର ସାହିତ୍ୟ ସମିତିର ବାର୍ଷିକୋତ୍ସବ ବିଷୟ ଜଣେ ଦୁଃସ୍ଥ କଳାକାର ପରି ସେଠାରେ ଆତ୍ମପ୍ରକାଶ କରୁଥିଲା । ଅବଶ୍ୟ ତାର ନଥିପତ୍ର ଉପରେ କାର୍ଯ୍ୟାନୁଷ୍ଠାନ ତତ୍‌କ୍ଷଣାତ୍ ଶେଷ ହୋଇ ଯାଉଥିଲା । ଅର୍ଥାତ୍ ସେ ବିଷୟଟା ଉଠିବା ସଙ୍ଗେ ସଙ୍ଗେ ଶେଷ ହୋଇ ପୂର୍ବୋକ୍ତ ଅନ୍ୟାନ୍ୟ ବିଷୟଗୁଡ଼ିକ ଉପରକୁ ଆଲୋଚନାଟା ପୁଣି ମାଡ଼ି ଯାଉଥିଲା । ଗଉଡ଼ହୀନ ଗୋଠପରି ସମିତିର ସଭ୍ୟମାନେ ଅଜାଣତରେ ବିଶୃଙ୍ଖଳିତ ହୋଇଯାଇଥିଲେ ।

ସ୍ଥିରୀକୃତ ସମୟର ଠିକ୍ ଘଣ୍ଟାଏ ଡେରିରେ ସମିତିର ମୁଖ୍ୟ କାରପଟଦାର ଜେନାକବ ଭବନରେ ପଦାର୍ପଣ କଲେ । ତାଙ୍କୁ ଦେଖିବା ମାତ୍ରେ ସଭ୍ୟମାନେ ଚଲେଇ ଉଠିଲେ—କଣ ଜେନାକବ ବାବୁ, ଆପଣ ମୁଖିଆ ଲୋକହୋଇ ଏକାବେଳକେ ଘଣ୍ଟାଏ ଡେରିରେ ଆସୁଛନ୍ତି ।

ଗମ୍ଭୀର ହୋଇଯାଇ ଜେନାକବ କହିଲେ—କହୋ ମୁଖିଆ ପଦର ଶିରପାଟା କଅଣ ଏକା ମୋର ମୁଣ୍ଡରେ ଭିଡ଼ା ହୋଇଛି ? ଏଠି ତ କେହି କାହା ମୁଣ୍ଡରେ ଶିରପା ଭିଡ଼ୁନି । ଏଠି ନିଜ ପଇସାରେ ଶିରପା କିଣି, ନିଜ ମୁଣ୍ଡରେ ନିଜ ହାତରେ ବାନ୍ଧିବାକୁ ହେବ । ଅନ୍ୟକୁ ଅପେକ୍ଷା କଲେ ସେମିତି ଅପେକ୍ଷା କରି ବସିରହିଥିବ—।

—ହଁ ହଁ ଯାହାକହୁଛ ଠିକ୍ ଯେ ସେଥିପାଇଁ କେହି ପ୍ରତିବାଦ କରୁନି, ତେବେ ଘଣ୍ଟାଏ ଡେରି ହୋଇଗଲାଣି । କାମ କେତେ ଆଗେଇ ଯାଆନ୍ତାଣି—।

—ସେଇଟା ଠିକ୍ ଯେ ମୋକଥା ଟିକିଏ ବୁଝ । ମୁଁ ହେଲି ଲେବର ଅଫିସର ହାକିମ । ପ୍ରତିଦିନ ରାଜଧାନୀ ଯାଇ ଲେବର ରୁମ୍‌ରେ ପଶେ । ସେଠାରୁ ବାହାରିଲା ବେଳକୁ ମୁଁ ଏକାବେଳକେ ହାଲିଆ । ମୋ ଲେବର ପେନ କଥା ବୁଝିବନି କାହିଁକି ?

ଲେବର ପେନ ଭୋଗି ଭୋଗି ମୁଁ ଏକାବେଳକେ କାହିଲା ହୋଇଗଲିଣି । ମୋ କଥା ଧରିଲେ ଚଳିବନି । ହଉ ଏବେ ଆସ ଆମ କାମ ଆରମ୍ଭ କରିଦେବା ।

ସମସ୍ତେ କାମରେ ଲାଗିପଡ଼ିଲେ । ସମସ୍ତେ ଏକାବେଳକେ କହି ଉଠିଲେ—ପଇସା । ଆଣେ ମଣିଷା, ଜନ୍ତୁପରିସା, ଟେଣ୍ଡର ନହେଲେ ମିଳିବ କିଂପା । ଆସିବ ବୁଝନ୍ତୁ, ଦବ କିଏ !

କେନାଲର କଥାଟାକୁ ନାପସନ୍ଦ କରି କହିଦେଲେ—ହୁଁଃ ! ଅଖିବୁଜି ଦେଇ ହନଗଡ଼, ମାସ, ବରଷ ଯାଏ ସମସ୍ତେ ବୋବାଉଥିବ—ଟଙ୍କା କାହିଁ ? କେଉଁଠୁ ଆସିବ ? କିଏ ଦେବ ? ତେବେ ପଇସାଟିଆ ପାଣି ଟୋପାଏ ବି ପାଇବ ନାହିଁ । ଆରେ ଆଖି ଖୋଲ, ଉଠ ଯୁଗଆଡ଼କୁ ଚାହଁ, ଦେଖିନିଅ ଝିଙ୍କପୋକପରି ନୋଟବହୁ କିପରି ଉଡ଼ୁଛନ୍ତି । ଆହୁରି ଦେଖ ସାପ, ବେଙ୍ଗ, ଚଟିଆଇ, କୁଆ, ଚିଲ, ବଗୁଡ଼ି, ଏଣ୍ଡୁଅ ମାନେ ଟପାଟପ, ଗପାଗପ ଝିଙ୍କପୋକମାନଙ୍କୁ ଝାମ୍ପି ନେଲାପରି କଳାପୋଷିଆ, ଘୁଷଖୋର, ଉପୁରିବାଲାମାନେ ଉଡ଼ୁଥିବା ନୋଟଗୁଡ଼ାକୁ ସନାସନ ଝାମ୍ପି ନେଇ ପକେଟ ପୂର୍ଣ୍ଣ କରିଦେଉଛନ୍ତି । ଆଙ୍ଗୁଠି ଗଣନ୍ତା କେଇଟା ନୀତିବାଦୀ ମଝିରେ ମଝିରେ କେବଳ ବଳବଳେଇ ହେଉଛନ୍ତି—ଆରେ ଖାଇଗଲାରେ, ଆରେ ମାରିଦେଲାରେ, ଆରେ ସାରିଦେଲାରେ, ଆରେ ଦେଶଟା ସରିଗଲାରେ, ଦୁର୍ନୀତି ସମୁଦ୍ରରେ ବୁଡ଼ିଗଲାରେ । ହତଭାଗାଗୁଡ଼ାକ ଚିଲେଇ ଚିଲେଇ ହାଲିଆ ହେଉଛନ୍ତି—ଗ୍ଲାସେ କପେ ପିଇ ଥାକ୍କାମ ହେଉଛନ୍ତି, ପୁଣି ଚିଲେଇବା ଆରମ୍ଭ କରିଦେଉଛନ୍ତି । ସେମାନଙ୍କ ହାଲପଟା ଦେଖି ମହାପାପୀମାନେ କର୍ନର୍ ହୋଇ ହସୁଛନ୍ତି । ଆଉ କହୁଛନ୍ତି—ଆରେ ବୋକା ଦଳ ! ତମେ ଦୁଇ ତିନିଜଣ ଦେଶଟାକୁ ଦୁର୍ନୀତି ସମୁଦ୍ରରୁ ଘୁଣି ଟେକିଧରିବ ପରା । ତୁମ ରଡ଼ି ଶୁଣିବ କିଏ ? ଯାହାକୁ ଶୁଣାଉଛ ସେସବୁ ବ'ହାଡ଼ିଆ ଚଲେଇଛନ୍ତି । ପାଟି ବନ୍ଦକରି ଆମ ସାଙ୍ଗକୁ ଚାଲିଆସ । ଦୁର୍ନୀତି ସମୁଦ୍ରରେ ବୁଡ଼ି ଚିଙ୍ଗୁଡ଼ି, କଙ୍କଡ଼ା ଧରିବା । ଭୋଜି ଉପରେ ଭୋଜି କରିବା ! ଅଫିସରେ ଦିନ କଟେଇଦେବା ପାଟିରେ ନବତାଲା ଗଡରେଜ ତାଲା ପକାଇ ଆମପରି କାମରେ ଲାଗିଯାଅ—

—ଆମେ ତ ହେଲୁ ସମସ୍ତେ କଲମ ଚଷୀ । ବ୍ୟବସାୟୀ ହୋଇଥିଲେ ସିନା କଳାପୋତେଇ କରି ଟଙ୍କା ରୋଜଗାର କରନ୍ତୁ । ଉତ୍ସବ ପାଇଁ ତ କିଛି ଅଳପ ଟଙ୍କା ଦରକାର ହବନି । ଏତେ ଗୁଡ଼ାଏ ଟଙ୍କା—

—ଆରେ ଟୋପାଏ ଟୋପାଏ ପାଣିହେଲେ ଗୋଟାଏ ମହାସାଗର ହୋଇଯିବ । କୋଉ ଅଫିସରେ ଉପୁରି ନାହିଁ ! ସମସ୍ତେ ନିଜ ନିଜ ଅଫିସରେ ଫାଇଲଗଡ଼ରେ ବ୍ରେକ ଲଗାଇଦିଅ । ଫାଇଲ ଠିକଣା ଲୋକଠାରୁ ଟଙ୍କା ଆଦାୟ କରି ତୁମକୁ ଦବ । ତୁମର ମାଗିବା ଦରକାର ନାହିଁ । ଏହାପରେ ଆମ ସାଂସ୍କୃତିକ ବ୍ୟାପାର ବିଭାଗମନ୍ତ୍ରୀ ହନୁକୁ ହସ୍ତ ହୋଇ ବସିଛନ୍ତି । ସାହିତ୍ୟିକ କଳାକାରମାନଙ୍କୁ ସେ ସବୁଠୁ ବେଶି ଭଲ ପାଆନ୍ତି । ଛେଳି, କୁକୁଡ଼ା, ଘୁଷୁରି ପାଇଁ ଫାଳରୁ ଲୋକଙ୍କୁ ଲକ୍ଷ ଲକ୍ଷ ଟଙ୍କା ଦେଇଛନ୍ତି । ସାହିତ୍ୟିକ କଳାକାରଙ୍କ କଥା ଉଠିଲେ ଯଥେଷ୍ଟ ବେଶି ଟଙ୍କା ଅଣାଇଦେବେ । ବାସ୍ ଟଙ୍କା କଥା ସରିଲା । ଆଉ କଅଣ କୁହ ।—

—ଉତ୍ସବ କେତେଦିନ ଯାଏ କରିବା ?

—ଗୁଡ଼ା ଟଙ୍କା ସରିବାଯାଏ । ଟିକିଏ ହାତ ଚିପି ଖର୍ଚ୍ଚ କଲେ ତିନି ଦିନଯାଏ ଗଡେଇ ନେଇ ହେବ । ଗୁଡ଼ାଏ ବି ସରିଲା । ଆଉ କଅଣ ଅଛି କହ ।—

—କେଉଁମାନଙ୍କୁ ଅତିଥି ଭାବରେ ଡକାଯିବ ସେଇଟା ଏଇଆଡ଼ୁ ଠିକ୍ ହୋଇଯିବା ଦରକାର । ଇଆଡ଼ୁ ସେମାନଙ୍କ ପାଖକୁ ଧାଁ-ଧପଡ଼ ନ କଲେ ଠିକଣା ବେଳକୁ ସେମାନଙ୍କୁ ପାଇବା ମୁସ୍କିଲ ହେବ । ଜଣଙ୍କ ପାଖରୁ ସମ୍ପୂର୍ଣ୍ଣ ନିରାଶ ହୋଇଗଲେ ଆଉ ଜଣଙ୍କୁ ପକଡ଼ିବାକୁ ହେବ । ଆଜିକାଲି ସାହିତ୍ୟ ସଭା ପାଇଁ ସବୁଜାଗାରୁ ଚଟାପଟ୍ ମିଳିଯିବ; କିନ୍ତୁ ନାମଜାଦା ଅବ୍ବଲ ନମ୍ବର ଅତିଥିଟାଏ ମିଳିବା ସହଜ କଥା ନୁହେଁ । ଅତିଥି ଏମିତି ହୋଇଥିବେ ଯାହାଙ୍କ ନାମ ଶୁଣିବାମାତ୍ରେ ଶ୍ରୋତାମାନେ ଠେଲାପେଲା ହୋଇ ଦଉଡ଼ି ଆସିବେ ।—

—ଆଚ୍ଛା, କେଉଁ କେଉଁ ଅତିଥି ପଦ ପାଇଁ କାହାକୁ କାହାକୁ ଡାକିବ ବୋଲି ଭାବୁଛ । ଅତିଥି ଯେତେ ବେଶି ଆସିବେ ସେତେ ବେଶି ଭଲ । ଆମର ଦରକାର— ବରିଷ୍ଠ, ସମ୍ମାନିତ, ମୁଖ୍ୟ, ଗୌଣ, ପୃଷ୍ଠପୋଷକ, ହରିଶ୍ଚନ୍ଦ୍ରୀୟ, ଘଣ୍ଟଘୋଡ଼ା ଶୀର୍ଷ ଓ ସର୍ବୋପରି ପ୍ରଧାନ ଅତିଥି, ତେବେ କାହାକୁ ଏଥିପାଇଁ ଡାକିବା ?

—ଜାନକୀ ବାବୁ, ମହତାବ ବାବୁ, ରାଧାନାଥ ବାବୁ, ସଚି ବାବୁ, ବସନ୍ତବାବୁ ଆଉ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ଡାକିବାକୁ ହେବ । କାହାକୁ ଡାକ ବା ନଡ଼ାକ, ବସନ୍ତ ବାବୁଙ୍କୁ ଅଲବତ୍ତ ଡାକିବାକୁ ହେବ । ତାଙ୍କୁ ଡାକିଲେ ଲାଭ ଅଛି । ଅନ୍ୟମାନଙ୍କ ବକ୍ତୃତା ଅଲଣା । କିନ୍ତୁ ବସନ୍ତ ବାବୁଙ୍କ ବକ୍ତୃତା ଲୁଣ ଓ ମସଲାଯୁକ୍ତ । ଯେଉଁଠି କେହି ଠିଆହେଇ ନ ପାରିବାରୁ ସଭ୍ୟଜଣଙ୍କ ବୁଝାଇଦେଲେ—ସମସ୍ତେ ବକ୍ତୃତା ଦେଇ ଚାଲିଯିବେ । କାନଗଳି ମରେଇବାକୁ ଆସିଥିବା ଶ୍ରୋତାମାନେ ଗଳି ମରେଇ ଚାଲିଯିବେ । ଆମର କି ଲାଭ ? ବସନ୍ତବାବୁ ମାଲଦାର ଆଦମୀ । ବକ୍ତୃତା ଶେଷରେ ସେ କେତେ 'ହ' ଟଙ୍କା ଆମ କୁଲମୂଳ ସମିତି ପାଇଁ ବ୍ୟବସ୍ଥା କରିଦେବେ । କେଣୁ ତାଙ୍କ ବକ୍ତୃତାଟା ଆମକୁ ଲୁଣ ଓ ମସଲାଯୁକ୍ତ ଛେନା ତରକାରି ପରି ଲାଗିବ, ତାଙ୍କୁ ଅଲବତ ଆଣିବାକୁ ହେବ । ଯଦି ନହାତି ଭିଡ଼ମୋଡ଼ି ହୁଅନ୍ତି ତେବେ ତାଙ୍କ କାନରେ ମନ୍ତ୍ର ଫୁଙ୍କି ଦେବା । ଦେଖନ୍ତୁ ଅଜ୍ଞା, ଆମ ସମିତିର ସଭ୍ୟସଂଖ୍ୟା ବୃଦ୍ଧିକରି । ଏତିକି ଭୋଟ ଆପଣ ଠୋପଟାଏ ାଇଯିବେ । ବାସ୍ ସେତିକିରେ କାମ ଫତେ ?

ଯୋଗାଯୋଗ ସ୍ଥାପନ କରି କିଏ ସେମାନଙ୍କୁ ମନେଇବ ସେ ପ୍ରଶ୍ନ ଉଠିବାରୁ ଅଧିକାଂଶ ସଭ୍ୟ ମତଦେଲେ—କେନା କବିଙ୍କ ଛଡ଼ା ଏ କାମ ଅନ୍ୟ କେହି କୁଲେଇ ପାରିବେ ନାହିଁ । ତାଙ୍କୁଇ ଏ ଭାରଟା ଦଆଯାଉ ।

କେନାକବି ମନେ ମନେ ଉଲୁଗୁଡ଼ିଲ ଗେଲେଇ ଭାବୁଥାଅନ୍ତି—ମୁଁ କଅଣ ମୁଣ୍ଡାପଡ଼ିଥି କି ସଭାପତି ହେବା ପାଇଁ ଉପଯୁକ୍ତ ବ୍ୟକ୍ତି ନୁହେଁ । ମୋ ଭାଗ୍ୟ କେହି ଜଣେ ଧଇଲା ନାହିଁ । ଠିକ୍ ଅଛି ମୁଁ ଅଲବତ ସଭାପତି ହେବି, ହେବି, ହେବି । କାହାର ସାଧ ଅଛି ମୋତେ ସେଥିରୁ ବଞ୍ଚିତ କରିବ ।"ମହିମଣ୍ଡଳେ ନାହିଁ ଏମନ୍ତ ଜନ । ଛଡ଼ାଇ ନେବ ସଭାପତି ଆସନ ।" ମୋତେ ଖୋସାମଦ କରି ସଭାପତି ଆସନରେ ବସାଇବ ।

ଅତିଥିମାନଙ୍କ ସହିତ ଆଗରୁ ସମ୍ପର୍କ ସ୍ଥାପନ କରି ମନେଇବା ପାଇଁ କେନାକବି ଏକମାତ୍ର ଧୁରନ୍ଧର ବ୍ୟକ୍ତି ବୋଲି ସମସ୍ତ ସଭ୍ୟ ଏକମତ ହେଲେ ଏବଂ ଡାଲୁଆ ଶିରପା ତାଙ୍କ ମୁଣ୍ଡରେ ବାନ୍ଧିଦେଲେ । ମନରେ ହର୍ଷ ଓ ମୁହଁରେ ବିଷାଦର ଛଟା ଫୁଟାଇ କେନାକବି ସେ ଗୁରୁଭାର ବହନ କଲେ ଏବଂ ସାଥୀ ସମ୍ମୁଖରେ ନିଜର ଅତି ଅନ୍ତରଙ୍ଗ ଚେଲାଙ୍କୁ ଧରି ଅତିଥି ଶିକାରକୁ ବାହାରି ପଡ଼ିଲେ ।

ପ୍ରଥମେ କେନାକବି ହିଦଲବଲ ବସନ୍ତବାବୁଙ୍କ ପାଖରେ ପହଞ୍ଚିଲେ । ସାହିତ୍ୟସଭା ସେଥିରେ ସାରୁ ଅଭ୍ୟନ୍ତରରେ କୌଣସି ପ୍ରକାର ମାଲୁର ସମ୍ଭାବନା

ନଥିବା ଜାଣି ବସନ୍ତବାବୁ ସଜ ହେବାକୁ ପ୍ରାପ୍ତ ସ୍ଥିର କରି ପଚାରିଦେଲେ—ଅଚ୍ଛା ଅନ୍ୟ କେଉଁ ଅତିଥି ସେଠାକୁ ଆସିବେ ?

ଜେନାକବି ହାତ ମଳି ମଳି କହିଲେ—ଅଜ୍ଞା ରାଧାନାଥ ବାବୁ ଆସିବାକୁ ପ୍ରତିଶ୍ରୁତି ଦେଇଛନ୍ତି ।

ବସନ୍ତବାବୁଙ୍କ ଭ୍ରୂଲତା ଟେକି ହୋଇଗଲା । କୌଣସି ପ୍ରକାର ଦୁର୍ଗନ୍ଧ ଆଘ୍ରାଣ କଲାପରି ତାଙ୍କ ନାକଟେକା ମୁହଁ ଦେଖାଗଲା । ଗମ୍ଭୀର ହୋଇଯାଇ କହିଦେଲେ—ହଉ ହଉ ଯାଅ । ମୁଁ ଘଣ୍ଟାଏ ଆଗରୁ ଯାଇ ପହଞ୍ଚିବି । ଡଇଁକାଟା ଆଗରୁ ସଜେଇ ରଖିଦେଇଥିବ । ସେଠାକୁ ନ ଗଲେ ମୋର ଭାତ ହଜମ ହବନି, ହଉ ଉଠ ଉଠ ଯିବଟି ।

ରାଧାନାଥ ବାବୁଙ୍କ ପାଖକୁ ଯାଇ ବସନ୍ତ ବାବୁଙ୍କ ସେଠାକୁ ଯିବା କଥା କହିବାରୁ ସେ ମଧ୍ୟ ଅନୁରୂପ ଦୁର୍ଗନ୍ଧାଘ୍ରାଣ କଲେ ଏବଂ କହିଲେ—ସେଠାକୁ ନଗଲେ ମୋ କାଗଜ ବନ୍ଦ ହୋଇଯିବ । ଶୀଘ୍ର ଏଠୁ ଉଠିଲ, ମୁଁ ଅଳବତ ଯିବି ।

ତହୁଁ ଜେନାକବି ଗଲେ ଘରେ, ପଶିଲେ ଯାଇ ଜାନକୀ ବାବୁଙ୍କ ଘରେ । ସାହିତ୍ୟ ସଭାକଥା ଶୁଣି ତାଙ୍କ ମନ ପ୍ରାପ୍ତ ୯୮ ଭାଗ ପୂରି ଆସିଥିଲା । ଏତିକିବେଳେ ଜେନାକବି କହିଦେଲେ ଆଜ୍ଞା ଫାଲରୁ କେହି କେହି ଆପଣଙ୍କ ବେକରେ ଫୁଲମାଳ ଦେବେ ନାହିଁ । ଜଣେ ଟାଣୁଆ ଡେଗଡ଼ମାର ଆଧୁନିକ କବି ଶ୍ରୀଯୁକ୍ତ ହୋସେନ ରବିଗାନ୍ଧି ହିଁସ୍ତରେ ଆପଣଙ୍କୁ ପୁଷ୍ପମାଳ୍ୟ ପ୍ରଦାନ କରିବେ ।

ଜାନକୀ ବାବୁ ଚମକପଡ଼ି କହିଲେ—ଏଁ ଏଁ କଅଣ କହିଲ ?

ହୋସେନ ରବିଗାନ୍ଧି ? କି ଫୁଲର ମାଳ ଦେବେ ? ଗୋଲାପ ନା ବକୁଆଡ଼ି ଫୁଲ ?

—ଆଜ୍ଞା ଗୋଲାପର ବନ୍ଦୋବସ୍ତ କରିଛୁ, କହିବେ ତ ଆମେ ଚମ୍ପା, ମଲ୍ଲୀ, ବଉଳ କମ୍ବା କସ୍ତୁରିମାଳ ଯୋଗାଡ଼ କରିଦେବୁ ।—

—ଆଚ୍ଛା ମୁଁ ତ ଜରୁର ଯିବି । ଆପଣମାନେ ଶୀଘ୍ର ଏଠୁଁ ଉଠିଲେ—

ଜେନାକବି ପୁଣି କଅଣ କହିବାକୁ ଯାଉଥିଲେ, ଜାନକୀ ବାବୁ ପାଟିକଲେ—ଆରେ କିଏ ଅଛ ଏମାନଙ୍କୁ ଘରୁ କାଢ଼ି କବାଟ ଲଗେଇ ଦିଅ ।

କେନାକର ଦଳବଳଙ୍କୁ ବୁଝେଇଦେଲେ, ଗୋଟାଏ ଗୁପ୍ତମନ୍ତ୍ରଣା ହବାର ଥିଲା, ସେଇଥିଲାଗି ତରବରରେ ସେ ଘର ଖାଲି କରେଇଦେଲେ ।

ପର ଅତିଥି (ସଙ୍ଗୀ ଅତିଥି) ରୂପେ ରାଧାନାଥ ବାବୁଙ୍କ ନାମ ଶୁଣି ମହତାବ ବାବୁ କହିଲେ—ଆମ୍ଭେ ତୁମେମାନେ ହେଲୁ ଯୁବକ, ଦେଶର ଭବିଷ୍ୟତ । ଏପରି କାର୍ଯ୍ୟକଲେ କପଟ ହେବ । ଆଉ ବୁଢ଼ାହାଡ଼ାମାନଙ୍କୁ ଅପେକ୍ଷା କରିବାଟା ଭଲ ନୁହେଁ । ମୁଁ ଅବଶ୍ୟ ନିଜକୁ ବୁଢ଼ା ବୋଲି ଭାବୁନି, ମୋ କଥା ନିଆରା, ଯିବାକୁ ଚେଷ୍ଟା କରିବି ।

ସବୁ ଅତିଥିଂ ଆସିବାକୁ ରାଜିହେବା କଥା ଜାଣି—ହୁଲସ୍ଥୁଲ ସମିତିରେ ଆନନ୍ଦ ଖେଳିଗଲା ।

କେନାକର ତାଙ୍କର ଅତି ବିଶ୍ବସ୍ତ ପାଟେଲି ବଂଶୀଧରଙ୍କୁ ଏକାନ୍ତକୁ ଡାକିନେଇ କହିଲେ—ଦେଖ୍ ବଂଶୀ, ସଭା ଆରମ୍ଭରେ ସଭାପତି ନ ଆସିଲେ ତୁ ପଟ୍‌କିରି ଠିଆ ହୋଇପଡ଼ି ଘୋଷଣା କରିଦେବୁ—ଅସୁସ୍ଥତାବଶତଃ ନିର୍ଦ୍ଧାରିତ ସଭାପତି ଆସି ନ ଥିବାରୁ କେନାକରଙ୍କୁ ସଭାପତି ହେବା ପାଇଁ ପ୍ରସ୍ତାବ କରୁଛୁ, ଆଉ ଅଗଣିକୁ ତିଆରି କରି ରଖିଥିବୁ, ସେ ସଙ୍ଗେ ସଙ୍ଗେ ଦ୍ବିତୀୟ କରିଦେବ ।

ତିନିଦିନ ଯାଏ ଉତ୍ସବ ହେଲା । କହିବା ବାହୁଲ୍ୟ ଯେ କେନାକର ତିନିଦିନଯାଏ ସଭାପତି, ନା—ନା—ଅଲବତ୍ତ ସଭାପତି ହୋଇଥିଲେ ।

—*—

# ବଦଳେଇ ଭୂତ

ନୂଆ ଅଧ୍ୟାପକ ଶ୍ରେଣୀ ଭିତରକୁ ଆସିବା ପୂର୍ବରୁ ଶ୍ରେଣୀକକ୍ଷଟା ଛାତ୍ରମାନଙ୍କ ଶାସନାଧୀନ ଥିଲା । ଜଣେ ଗୁଣ୍ଡ୍ରୁଚ ଲଙ୍ଗୁଡ଼ିଆ ଜଣ ଓ ବାବୁରିବାଳୁଆ ଭେଣ୍ଡିଆ ସେଠି ରାଜତ୍ୱ କରୁଥିଲେ । ନାକମେଣ୍ଢିଆ ଓ ହୁପ୍‌ପିବାଳୁଆ ଦୁଇଜଣ ଭେଣ୍ଡିଆ ତାଙ୍କ ଦୁଇପାଖେ ମନ୍ତ୍ରୀ ଓ ସେନାପତି ହୋଇ ବସିଥିଲେ । ତିନିଜଣଙ୍କର ଗୋଟିଏ ଗାଦି ଥିଲା ଅର୍ଥାତ୍ ଟେବୁଲ୍‌ଟି, ଅନ୍ୟାନ୍ୟ ଛାତ୍ରମାନେ ପ୍ରଜା ହୋଇ ଶ୍ରେଣୀର ବେଞ୍ଚରେ ବସିଥିଲେ, କେହି କେହି ଯିବା ଆସିବା କରୁଥିଲେ । ରାଜାଙ୍କ ଦରବାରରେ ଜଣେ ତାନ୍‌ସେନ ବି ଥିଲେ । ସେ ଅଳ୍ପ ଗଳାରେ ଓ ମନଫୁଲ୍ଲଣିଆ ରାଗରେ ଧ୍ରୁପଦ ଗାଉଥିଲେ । ସେଠାରେ ଅନୋଖିଲାଲ ତବଲ୍‌ଚି ମଧ୍ୟ ଉପସ୍ଥିତ ଥିଲେ । ସେ କିନ୍ତୁ ଏମିତିଆ ସେମିତିଆ ତବଲଚି ନଥିଲେ । ସାଧାରଣ ତବଲଚିମାନେ ଡୁବି-ତାବଲାରୁ ଲହର ଛୁଟାନ୍ତି, କିନ୍ତୁ ସେ ବେଞ୍ଚ୍ ପିଠିରୁ ତାବଲା ଲହର ଛୁଟାଇ ଲାଗିଥିଲେ । ଆଉ ଦର୍ଶକଜଣ ସଙ୍ଗୀତାମୋଦୀ ଭକ୍ତ ଆଖିବୁଜି 'ଓ୍ୱା ଓ୍ୱା, ଓ୍ୱା ଭାଇ, ମାର୍ ଦିଆ' ବଳବଳେଇ ତାନସେନଙ୍କୁ ତାଉ ଯୋଗାଉ ଥିଲେ । ଅନୋଖିଲାଲ ଏଡ଼େ ଜୋର୍‌ରେ ଟେହାଇ ଛୁଟାଉଥାଆନ୍ତି ଯେ ହତଭାଗ୍ୟ ବେଞ୍ଚର ପିଠି ବଙ୍କା ହୋଇଯାଇଥାଏ । ତାନ୍‌ସେନଙ୍କ ସଙ୍ଗୀତରେ ରାଜା କେଲେବେଳେ ଉତ୍ଫୁଲ୍ଲିତ ହୋଇଉଠି ସେନାପତି ଓ ମନ୍ତ୍ରୀଙ୍କ ପିଠିରେ ତାବଲା ଲହର ଛୁଟାଇ ଦେଉଥାଆନ୍ତି । ତାନସେନଙ୍କ ଦ୍ରୁତଲୟର ମଝିରେ ନୂଆ ଅଧ୍ୟାପକ ପ୍ରଥମଥର ପାଇଁ ଶ୍ରେଣୀ ଭିତରକୁ ପଶି ଆସିଲେ । ତାନସେନଙ୍କ ପେଟିରେ ଗୀତ ପଚ୍‌କରି ଅଟକିଗଲା । ଅନୋଖିଲାଲଙ୍କ ଟେହାଇ ପଡ଼ିବା ପୂର୍ବରୁ ତାଙ୍କ ହାତ ଅଚଳ ହୋଇଗଲା । ରାଜା, ମନ୍ତ୍ରୀ ଓ ସେନାପତି ଫଟ୍‌ଫାଟ୍ ଟେବୁଲ ଉପରକୁ ଡେଇଁପଡ଼ି ବେଞ୍ଚ ଆଡ଼େ ରାଜଠାଣିରେ ଘୁଲିଲେ । ରାଜା ବୁଲିପଡ଼ି ଓ ନଣଟାକୁ ଧାଉଁଲେଇ କହିଲେ—

—ସାର୍ ଆପଣ ଖୁବ ବେରସିକ ଲୋକ !

—ତମେ ସମସ୍ତେ ବୋଧେ ରସିକ ଲୋକ ?

—ନା ସାର୍, ଆମେ ସମସ୍ତେ ପହିଲା ନମ୍ବର ରସିକ । ଅବଶ୍ୟ ଆଠ-ଦଶଟା ବେରସିକ ପାଠୁଆ ଟୋକା ଅଛନ୍ତି । ବହି ତ ସେମାନଙ୍କର ହବୁ ରସ ଟାଣି ନେଇଛି । ସେମାନଙ୍କୁ କେହି ପରୁଆନ୍ତି ନାହିଁ ।

—ଆଚ୍ଛା ତୁମ୍ଭେମାନେ କ ରସରେ ମାତିଥିଲ ?

—ସାର୍, ଆପଣଙ୍କ ଡାକକୁ କିଏ ଶୁଣିଭ ନାହିଁ କି ? ଏଠି ସବୁ ଶୀତର ଆସର ଜମି ଉଠିଥିଲା । ଆପଣ ଭୂଲ୍ କରି ପଶି ଆସିବାରୁ ଶୀତଟା ଚାଲିଛୁଣ୍ଡି ବା ପୂର୍ବରୁ ଆପଣଙ୍କଯୋଗୁ ବନ୍ଦ ହୋଇଗଲା । ରସ ଅସଂ ଅସଂ ନ ହୋଇ ଅପ୍‌ଟର ବନ୍ଦ ହୋଇଗଲା । ଆମମାନଙ୍କର ରସପାନ ଭଣ୍ଡୁର ହୋଇଗଲା ।

ଆରେ ଏ ଅଦ୍ଭୁତ କଥା; ମୁଁ ତ ଆସୁଥିଲି ତୁମମାନଙ୍କ ହାତରେ ଟିକିଏ ରସ ପିଇଥାଆନ୍ତି । ତୁମେ ଏତେ ସ୍ୱାର୍ଥପର, ରସ ପରିବେଷଣ ବନ୍ଦ କରିଦେଲ ?

—ସାର୍ ଆମର ସେତେବେଳେ ଭୁଲ ହୋଇଗଲା । ଆପଣ ଏତେ ଭଲ ସାର୍ ବୋଲି ଜାଣି ନ ଥିଲୁ । ସାର୍ ସତରେ କହନ୍ତୁ, ଆପଣ ଆମ ଭିତରେ ଜଣେ ?

—ମୋତେ ପର ବୋଲି ଭାବୁଛ କାହିଁକି ? ମୁଁ ତ ଆସିଛି ତୁମମାନଙ୍କ ସହିତ ଏଇଠି କେତେ ବର୍ଷ କଟେଇବି । ତୁମରି ସୁଖଦୁଃଖରେ ଭାଗୀ ହେବି । ତୁମ ସଙ୍ଗେ ଜଣେ ନ ହେବି କେମିତି ?

ସେତେବେଳକୁ କେତେଜଣ ପ୍ରଜା ନିଜନିଜ ସ୍ଥାନରେ ବସିସାରିଥିଲେ । ଅଳ୍ପ ଗଳାରେ କେତେଜଣ କୁହାକୁହି ହେଲେ—ଶଳାଟା କଥରେ ଭଲ ଭଳି ଜଣା ପଡ଼ୁଛି । ଆଉ କେତେ ଜଣ ସତର୍କବାଣୀ ଶୁଣାଇଲେ—ମାତ୍ର ଏତିକି କଥାରୁ ଭଲବୋଲି କହିଦେବାଟା ଠିକ୍ ହେବନି । ଆମେ ହେଲୁ ମଫ୍‌କା ବଣିଆ । ସୁନାର ଉପର ରଙ୍ଗ ଦେଖି ଖାଣ୍ଟି ବୋଲି କହି ପାରିବୁନି । ସୁନାକୁ କଷଟି ପଥରରେ ଘଷିବା, ତାକୁ ଆଉଟିବା । ସେତେବେ ଯାଇ ଭଲ ଭେଲ କହିବା ।

ପାଞ୍ଚ ଛଅଟା ପାଠୁଆ ଏକାଠି ବସିଥିଲେ । ସେମାନେ ଫୁସ୍‌ଫାସ୍ ହୋଇ କୁହାକୁହି ହେଲେ—ହାଲୁଚେରକା, ଆମେ ଭାବିଥିଲୁ ଗୋଟାଏ ଭଲ ପଢ଼େଇବା ଅଧ୍ୟାପକ ଆସିବ । ସେ ବି ସେଇ ଗୋଷ୍ଠୀର । ପଢ଼ିଲୁ ତ ଘରେ ପଶୁ ମଶୁ ସ୍କୁଲରେ ମୁଣ୍ଡ ବାଜିଲାଣି, ସେଇ ବାଙ୍କୁଡ଼ା, ଛତରଙ୍କ ସଙ୍ଗେ ମିଶିଗଲାଣି, ସେମାନଙ୍କର ଦୋସ୍ତ ବନିଗଲାଣି । ପାଠପଢ଼ା ଆଉ ସେନାଟା ହେବ ।

ସ୍ୱନାଙ୍କର ବିଶ୍ୱସ୍ତ ପ୍ରଜା କେତେଜଣ କୁହାକୁହି ହେଲେ—ଏଇଟା ଅଧ୍ୟାପକ କେଉଁ ଗୋଇନ୍ଦା ନୁହେଁ ତ ଆଉ ! ଆମ ସଙ୍ଗେ ଦୋସ୍ତ ବନି, ଆମ ଗୁମର ସବୁ

ଜାଣିନେଇ ସରକାରଙ୍କ ଆଗରେ ବାଢ଼ିବ । ଆମକୁ ହଲ୍ପଟା କରନ୍ତ, ଆମକୁ ନଚେଇବ, ଭଦ୍ର ମ ପୁଅ ରୁ ଡାଲେଡାଲେ ଗଲେ ଆମେ ପତରେ ପତରେ ଯିବୁ । ରୁ ପତରେ ପଳାଇଲେ ଗଲେ ଆମେ ଶିରାଏ ଶିରାଏ ଯିବୁ । ଦେଖାଯାଉ କୋଉ ପାଣି କୁଆଡ଼କୁ ଯାଉଛି ।

କ୍ରମେ ଗୁଞ୍ଜରଣ ବଢ଼ିଗଲା । ହଠାତ୍ ରଜା କଡ଼ା ହୁକୁମ ଜାରି କଲେ— ଆବେ ଗୁଁ ଗାଁ ବନ୍ଦ କରବେ । ଇସ୍ସେ ଆମ ଜାଡର ସାର୍ ।

ରଜାଙ୍କ ଆଦେଶ କିଏ ଅମାନ୍ୟ କରିବ ! ଗୁଁ ଗାଁ ମନ୍ଦେଇ ହଇଁ ଥମିଗଲା । ଅଧ୍ୟାପକଙ୍କ ଅନୁରୋଧକ୍ରମେ ରଜା ହାଜର ପକେଇ ଦେଲେ ଓ ନିଜ ସ୍ଥାନରେ ବସି ଅଧ୍ୟାପକଙ୍କୁ ନିର୍ଦ୍ଦେଶ ଦେଲେ—ସାର୍ ଆଜି ପ୍ରଥମ ଦିନ । ତେଣୁ ପଢ଼ାପଢ଼ିଟା ଆରମ୍ଭ କରିବା ଠିକ୍ ହେବନି । ଆଜି କେବଳ ଜାଣପେଣ୍ଟ ହେଉ । କିଏ କିଏ ତାହା ପହିଲେ ଆପଣ ଚହ୍ନିବା ଦରକାର ।

—ଠିକ୍ କହୁଛ । ଚିହ୍ନା ପରିଚୟଟା ଆଗ ହୋଇଯାଉ । ତା ପରେ ପାଠପଢ଼ା ହେବ । ଚିହ୍ନା ପରିଚୟ ହୋଇଗଲେ ଅଧ୍ୟାପକ ଓ ଛାତ୍ରଙ୍କ ସମ୍ପର୍କଟା ଦୃଢ଼ ହେବ । ଦୃଢ଼ ସମ୍ପର୍କ ରହିଲେ ପାଠ ପଢ଼ାଟା ବି ଖୁବ୍ ଭଲ ହେବ । ତମ କଥାରେ ମୁଁ ରାଜି । ଜାଣପେଣ୍ଟଟା ହୋଇଯାଉ ।

ଜାଣପେଣ୍ଟକୁ ଅଧ୍ୟାପକ ପନ୍ଦର ମିନିଟ୍‌ରେ ସାରିଦେଇ ପାଠପଢ଼ା ଆରମ୍ଭ କରିବାରୁ, ରଜା ବାଧ୍ୟ ହୋଇ ଚୁପ୍ ରହିଲେ ।

ଅଧ୍ୟାପକଙ୍କ ପାଟିରୁ ପାଠର ଶିରୋନାମା ବାହାରିବା ମାତ୍ରେ ଜଣେ ପ୍ରଜା ପଚାରିଲା—ସାର୍ ଆପଣ କୋଉଁଠୁ ବଦଳି ହୋଇ ଆସିଲେ ସେ ବିଷୟ ତ କହିଲେ ନାହିଁ ।

—ସତେ ତ ମୋର ମନେନାହିଁ, ମୁଁ ଆସିଛି ଗଜରାଜପୁର କଲେଜରୁ । ଭଲ କଲେଜଟାଏ ଏକା ।

—ସାର୍, ଗ୍ରାଉଣ୍ଡଟା କେତେ ?

—ସ୍କ୍ୱାୟାର୍ କୋଉଡ଼ଏ ।

—ସାର୍, ପିଲାମାନେ ସେଠି ଉଡ଼୍‌ବାଇଜା ନୁହନ୍ତି ତ ?

ନା—ନା, ଉଦ୍‌ବାଇନା ହେବେ କାହିଁକି ? ତୁମ୍ଭମାନଙ୍କ ପରି ସେମାନେ ମଧ୍ୟ ପଢ଼ିବାରେ ଆଗ୍ରହୀ । ବ୍ୟବହାର ମଧ୍ୟ ତୁମ୍ଭମାନଙ୍କ ପରି । ମୁଁ ତ କିଛି ପ୍ରଭେଦ ଦେଖୁନି । ତୁନିଆରେ ଛାତ୍ରମାନେ ଦଉଡ଼ି ଏକାଭଳି । ଧାରୁଆ ଛୁରୀ ହାତରେ ଧରିଥିଲାବେଳେ ହୁସିଆର ହୋଇ ଚଳିବାକୁ ହୁଏ । ଟିକିଏ ଅହୁସିଆର ହେଲେ ହାତ କଟିଯାଏ ।

—ହାର୍, ଆମେ କଅଣ ଆଉ ଧାରୁଆ ଛୁରୀ ହୋଇଗଲୁ ? ନେତାମାନଙ୍କ ପାଇଁ ଆମେ ଘଷିଆଡ଼ କାଟି କାଟି ଭୋଡ଼ା ହୋଇଗଲୁଣି । କଥାପିଛି ନେତାଏ କହୁଛନ୍ତି "ଚାଟ, ଭଦ ଚାଟ ।"

ଏତିକିବେଳେ ଘଣ୍ଟା ବାଜିଉଠାଇ ମାଷ୍ଟି କଲା—ଆଉ ଚୁପ୍ କର, ଭୁଣ୍ଟାଟାରେ ଭିତର ଉତ୍ତର ହେବଛ. ଆଜି ଭଲ ବାର ଅଛୁ. ପଢ଼ାଟା ହୋଇଯାଉ । ସାରଙ୍କ ବସାକୁ ଯିବା । ସେଇଠି ପେଟପୂରା ଗପ କରିବା । ସାର ଆପଣଙ୍କ ବସା କେଉଁଠି ?

—ମୁଁ ତ କାଲି ଆସି ପହଞ୍ଚିଲି । ଜଣେ ବନ୍ଧୁଙ୍କ ଘରେ ଅଛି । ଘର ଯୋଗାଡ଼ ହେଲେ ସେଠିକି ଚାଲିଯିବି ।

—ହଉ ସାର ପଢ଼ା ଆରମ୍ଭ କରନ୍ତୁ । ହେଇ ଦେଖ, ସମସ୍ତଙ୍କୁ ମୁଁ କହି-ଦେଉଛି—ଯୋଉ ଶଳା ଫେର ସାରଙ୍କୁ ଝୁଣ୍ଟେଇବ ତାକୁ ଏମିତି ଖୋରାକ ଦେବି ଯେ ଜନ୍ମଦେଇଭର ତା'ର ମନେ ରହିବ ।

ପଢ଼ୁଆ ପିଲାଙ୍କଠାରୁ ବହିର ଯେଉଁଠାରୁ ଆରମ୍ଭ ହେବ ସେଇଠାରୁ ଆରମ୍ଭ କରିବାକୁ ଯାଇ ଅଧ୍ୟାପକ କହିଲେ · ଏହି ବିଷୟଟିର ପ୍ରଥମ ଚାପ୍ଟର ମୁଁ ଜୟପୁରର କଲେଜରେ ପଢ଼େଇବା ପରେ ମହୁଲପୁର କଲେଜକୁ ବଦଳି ହୋଇ ସେଠି ଦ୍ୱିତୀୟ ଚାପ୍ଟର ପଢ଼େଇଲି । ତୃତୀୟ ଚାପ୍ଟର ଆରମ୍ଭ କରିବାକୁ ଯାଉଛି ବାଣ୍ଡିଆ କଲେଜକୁ ବଦଳି ହେଲି । ସେଠି ତୃତୀୟ ଚାପ୍ଟର ସାରିନି ଏଠିକି ବଦଳି ହୋଇ ଆସିଛି । ଏଠି ଦେଖୁଛି ମୋତେ ପୁଣି ତୃତୀୟ ଚାପ୍ଟରଠାରୁ ଆରମ୍ଭ କରିବାକୁ ପଡ଼ିବ । ଚତୁର୍ଥଟି ଆଉ କେଉଁ ଏକ କଲେଜରେ ପଢ଼େଇବାକୁ ପଡ଼ିବ । ମୋର ଜଣେ ବନ୍ଧୁ ମୋତେ ସେତିକି ଆଗରୁ ଜଣେଇ ଆସୁଛି କଲେଜକୁ ବଦଳି କରିବା ପାଇଁ ଠିକ୍ ହୋଇଛି ବୋଲି କହିଦେଇଛନ୍ତି ।

ଏତିକିବେଳେ ଘଣ୍ଟା କହିଲେ—ସାର୍, ଶିକ୍ଷା ବିଭାଗର କର୍ତ୍ତୃପକ୍ଷ ଏହିଠାରୁ କଲେଜରୁ ପାଖ୍ଟର ସେ ବଦଳିରେ ସ୍ୱୀକାର କରିଛନ୍ତି । ସେଇଥିଲାଗି ଖୁବ୍ ପ୍ରେମରେ

ସେମାନେ ଆପଣଙ୍କୁ ଏହିପରି କଲେଜରୁ ଘନ ଘନ ବଦଳି କରୁଛନ୍ତି । ହଉ ସାର୍, ପଢ଼ାନ୍ତୁ ପଢ଼ାନ୍ତୁ । ଅଧ୍ୟାପକ ପୁଣି ପଢ଼େଇବା ଆରମ୍ଭ କଲେ । ପୂର୍ବପରି ଝୁଣ୍ଟି ଝୁଣ୍ଟି କୌଣସି ମତେ ସେଦିନର ପଢ଼େଇବାଟା ଅତିକ୍ରମ କରିଗଲେ । ଅଧ୍ୟାପକ କଲେଜରୁ ବସାକୁ ଗଲାବେଳେ ଭୂମ ବହିଆଡ଼େ ଖୋଲିଯିବ ବୋଲି କହିଲେ ।

ଠିକ୍ ସମୟରେ ଅଧ୍ୟାପକ ଯାଇ ରାଜାର ବସାଘରେ—ନାହିଁ ନାହିଁ ପ୍ରାସାଦରେ ପହଞ୍ଚିଗଲେ । କୋଉ ସାର୍ ତ ଆସନ୍ତି ନାହିଁ, ଏ ସାର୍ ମଧ୍ୟ ଆସିବେ ନାହିଁ ଭାବି ରାଜା ଓ ତାଙ୍କର ଫଉଜ ଭବିଷ୍ୟତର ଯୁଦ୍ଧ ପରିଚାଳନା ଓ ଅସ୍ତ୍ରଶସ୍ତ୍ର ଚାଳନା ବିଷୟରେ ଯୋଜନା ପ୍ରସ୍ତୁତ କରିବାରେ ଲାଗିଥିଲେ । କେଉଁ କପି ଧରିଥିବା ଅଧ୍ୟାପକ ଉପରେ ବୋମାଏ ବୃଷ୍ଟି, କାହାକୁ ଛୁରୀ ଦେଖାଇ ଜବତ, କେଉଁ ଗ୍ରନ୍ଥୀକୁ ଖୁଣ୍ଟା, କାହା ପାଖକୁ ବେନାମୀ ଚିଠିରେ କିପ୍ରକାର ଧମକ ଇତ୍ୟାଦି ଦିଆଯିବ ତାର ଖସଡ଼ା ତିଆରି ଲାଗିଥାଏ । ଅଧ୍ୟାପକଙ୍କ ଆବିର୍ଭାବରେ ସମସ୍ତେ ଅପ୍ରସ୍ତୁତ ହୋଇପଡ଼ିଲେ । ରାଜା କହିଲେ…

—ସାର୍, ଆପଣ ସତରେ ଆସିବେ ବୋଲି ଆମେ ଭାବି ନ ଥିଲୁ । କେହି କେବେ ଆସନ୍ତି ନାହିଁ । ଆବେ ଗେଣ୍ଡୁଆ ଯା, ସାର୍ଙ୍କ ପାଇଁ ବଜଲ ଦୋକାନରୁ ଭଲ ଜଳଖିଆ ନେଇ ଆସିବୁ ।

…ଉହୁଁ ମୋ ପାଇଁ କାହିଁକି, ସମସ୍ତଙ୍କ ପାଇଁ ଆସୁ । ସମସ୍ତେ ଖାଇବା । ଏଇ ଏ ଦଶଟଙ୍କା ନିଅ ।

ଜଣେ ଫଉଜ କହି ପକାଇଲା—ସାର୍, ଆମକୁ ବଢ଼େଇ ଦେଲେ । ବାକଲ ଧାରରେ ଦେଇ ନଥାନ୍ତା ।

ଜଳଖିଆ ଶେଷ ହେବା ପରେ ରାଜା କହିଲେ ସାର୍, ଆପଣଙ୍କ ପରି ସାର୍ ଆମେ ଆଉ ପାଇବାନି । ହେଲେ ସେ ଟିଙ୍ଗା ପ୍ରିନ୍ସିପାଲ୍ଟା ଆପଣଙ୍କୁ ରଖେଇଦେବନି । ଆପଣଙ୍କୁ ଆମ ସାଙ୍ଗରେ ମିଶିବା ଦେଖିଲେ ତାଙ୍କ ଦେହ ଜଳେଇ ଉଠୁଛି । କଅଣ ଗୁଡ଼ାଏ ଅପଛନ୍ଦିଆ କଥା ଆପଣଙ୍କ ବିରୁଦ୍ଧରେ ଲେଖି ଉପରକୁ ପଠାଇଦେବ । ସଙ୍ଗେ ସଙ୍ଗେ ବଦଳି ।

—ବଦଳି ହେଲେ ହେବ । ଚିନ୍ତା କ'ଣ ? ଯେତେ ଛାତ୍ରଙ୍କ ସଂସ୍ପର୍ଶରେ ଆସିବି ମୋର ସେତେ ଆନନ୍ଦ । ତୁମେମାନେ ସବୁଦିନେ ଅନ୍ୟ ଥାନର ଛାତ୍ରମାନଙ୍କ

ପରି ମୋ ହୃଦୟ ଭିତରେ ରହିଥିବ । ଯେତେ ଅଧିକ ଛାତ୍ରଙ୍କୁ ମୁଁ ମୋ ହୃଦୟ ଭିତରେ ରଖିବି ମୋର ସେତେ ଅଧିକ ଆନନ୍ଦ ।

—ନା ସାର୍, ଆମେ ଆପଣଙ୍କୁ ଛାଡ଼ିବୁ ନାହିଁ । ଷ୍ଟ୍ରାଇକ କରି କଲେଜ ବନ୍ଦ କରିଦେବୁ । ମନ୍ତ୍ରୀଙ୍କୁ ବାଟ ଚଲେଇ ଦେବୁନି ।

ଛାତ୍ରମାନଙ୍କ ଭବିଷ୍ୟତବାଣୀ ସତ ହେଲା । ସେମାନେ ହନୁମନ୍ତ ପରି ହୁଁ-ହାଁ ହୋଇ ଡେଇଁବାରୁ ଅଧ୍ୟାପକ ସେମାନଙ୍କୁ ଶାନ୍ତ କରାଇ କହିଲେ—ଦେଖ, ତୁମ୍ଭମାନଙ୍କ ହସ ମୁହଁ ଦେଖି ଓ ମୁଁ ହସି ହସି ତୁମମାନଙ୍କ ଠାରୁ ବିଦାୟ ନେବି । ମୋତେ ଯଦି ପ୍ରକୃତରେ ଭଲପାଉଛ ତେବେ ଗଣ୍ଡଗୋଳ ନ କରି ହସି ହସି ମୋତେ ବିଦାୟ ଦେବ ।

ସଜାଙ୍କ ଅନୁକୂଳ ଏବଂ ନାହିଁ ନଥିବା ବିଦାୟ ସମ୍ବର୍ଦ୍ଧନା ଦେବାକୁ ସ୍ଥିର କଲେ । ଅନୁକୂଳର ଶୋଇନା ବରେଇ ସଂଗ୍ରହ କରାଗଲା ଯେ ତାଙ୍କୁ ପୂର୍ବ କଲେଜରୁ ଆସିଲାବେଳେ ୨ଟା ଷ୍ଟେନଲେସ୍ ସେଟ, ଗୋଟାଏ ଟେବୁଲ ଫ୍ୟାନ, ଗୋଟାଏ ଟେବୁଲଲାଇଟ, ସୁଟିଂସାର୍ଟିଂ ଦିଆଯାଇଥିଲା । ସମସ୍ତେ ସର୍ବସମ୍ମତି ଗୋଟିଏ ରଙ୍ଗୀନ ଟି.ଭି. ଉପହାର ଦେବାକୁ ସ୍ଥିର କଲେ । ଚାନ୍ଦା ସଂଗ୍ରହ ଯୁଦ୍ଧକାଳୀନ ଭିତ୍ତିରେ କରାଗଲା । ଦୋକାନଦାର, ଘରୋଇ ବସ୍ ଓ ଟ୍ରକବାଲାଏ, ଟ୍ରେକର, ଅଟୋ ରିକ୍ସାବାଲାମାନେ ପ୍ରମାଦ ଗଣିଲେ । ଧାର୍ଯ୍ୟ ଟଙ୍କାରୁ ବେଶି ଆଦାୟ ହେବାରୁ ସାରଣୀଙ୍କ ପାଇଁ ୨ଟା ସିଲକନ୍ ଶାଢ଼ୀ ରଙ୍ଗିନ ଟି.ଭି. ସହିତ ଉପଢ଼ୌକନ ସ୍ୱରୂପ ଦିଆଗଲା ।

ଅଧ୍ୟାପକ ଭଣ୍ଡାର ଘର ଭିତରେ ସାଇତି କରି ରଖିଲାବେଳେ ତାଙ୍କ ସ୍ତ୍ରୀ କହିଲେ—ଝିଅ ବାହାଘର ପାଇଁ ଯୌତୁକ ଜିନିଷ ଯଥେଷ୍ଟ ଯୋଗାଡ଼ ହୋଇଗଲା । ଏବେ ଗୋଟାଏ ଫ୍ରିଜ ଆଉ ସୋଫାସେଟ୍ ଯୋଗାଡ଼ କରିବ ।

ଫ୍ରିଜଟାଏ ମିଳିଯାଇପାରେ । ଗୋଟାଏ ଅନ୍ତତଃ ଅଧିକ ମାରମୁହାଁ ଗୁଣ୍ଡା ଥିବା କଲେଜକୁ ବଦଳି ହେଲେ ଫ୍ରିଜଟାଏ ଥୁଆ । ସମ୍ଭବ ନ ହେଲେ ମୁହଁ ଖୋଲି କହିଦେବି—ଆଃ କାହିଁକି ଗୁଡ଼ାଏ ଜିନିଷ ଯୋଗାଡ଼ କରୁଛ । ଗୋଟାଏ କେବଳ ଫ୍ରିଜ ନେଇ ଆସ, ସେଇଟାକୁ ନିତି ଦେଖୁଥିବି ଆଉ ତୁମମାନଙ୍କୁ ମନେ ପକାଇ ଝୁରି ହେଉଥିବି । ଅନ୍ୟ କିଛି ନ ଆଣି ସେଇ ଫ୍ରିଜଟା ଦିଅ । ସେଇ ଟଙ୍କାରେ ହୋଇଯିବ ।

—ଶିକ୍ଷା ସଚିବଙ୍କ ଟୋପା, ଅଜା ଚଉଦ ପୁରୁଷ ବଦଳି କରିବ । ସେମିତିଆ ମନ୍ତ୍ରର ଯନ୍ତ୍ରର, କଚ୍ଛଡ଼ ଉଡ଼ନ୍ତର ବାଣ ମାରିଛୁ । ସେ ବିଭାଗର ଜଣେ କିରାଣି ଆଜି ଆସିବ । ତା'ଠୁ ମନ୍ତ୍ରର ଯନ୍ତ୍ରର କଚ୍ଛଡ଼ ଉଡ଼ନ୍ତର କଥା ଶୁଣିବୁ ।

ଘଣ୍ଟାକ ପରେ କିରାଣି ବାବୁ ଆସିଲେ । ସୁଧା ଜଳଖିଆରେ ତାଙ୍କୁ ଆପ୍ୟାୟିତ କରି ଅଧ୍ୟାପକ କହିଲେ—ଆହେ ତୁମ ଭାଉଜଙ୍କୁ ମୋ ମନ୍ତ୍ରର ଯନ୍ତ୍ରର କଚ୍ଛଡ଼ ଉଡ଼ନ୍ତର ରହସ୍ୟ ଟିକିଏ କହିବଟି ।

କିରାଣି ବାବୁ ହସି ହସି ଆରମ୍ଭ କଲେ—ପାଞ୍ଚ ପାଇଁ ସୁଧା ଆଦାୟ ବେଳେ ତୁମେ ସୁଧା ନ ଦେବାରୁ ବଡପେଲ୍‌ମାନେ ତୁମ ବିରୁଦ୍ଧରେ ବନେଇ ଚୁନେଇ ବାଉକଥା କହିଲେ । ମନ୍ତ୍ରୀ ରାଗି ହୋଇ ବର୍ଷକୁ ୨ଥର ବଦଳି କଲେ । ବଡପେଲ-ମାନେ ମୋଠୁଁ ଖବର ନେଉଥାଆନ୍ତି । ମୁଁ କହିଲି ସେ ଟିକିଏ ନଇଁଲାଣି । ଏତିକିବେଳେ ବଦଳି ରେଟ୍ ଆଉ ଟିକିଏ ବଢ଼େଇଦେଲେ ସେ ସୁଧା ସହ ଆସି ଗୋଡ଼ତଳେ ପଡ଼ିବ । ବର୍ଷକୁ ୪ଥର ଦେଲ । ମୁଁ ମନ୍ତ୍ରର ଯନ୍ତ୍ରର ଚଳେଇଥାଏ । ବଦଳି ୨ ମାସରେ ଥରେ ଯାଏ ବଢ଼ିଲା । ମୁଁ ମନ୍ତ୍ର ପୁଣି ପଢ଼ିଲି । ଏଥର ଠିକ୍ ହୋଇଛି ମାସକୁ ୨ ଥର ବଦଳି କରାଯିବ ।

ଉଭୟେ ହୋ ହୋ ହୋଇ ହସିଉଠିଲେ । ଅଧ୍ୟାପକ ପତ୍ନୀ ସ୍ଥିର ହୋଇଥିଲେ ସୁଦ୍ଧା ମନ କଥାଗୁଡ଼ାରେ ଆଙ୍ଗୁଠି ଗଣିଲେଇ କହିଲେ ଆଉ ବର୍ଷଟାଏ ଏହା ଜାରି ରହିଲେ ବଦଳିରୁ ମିଳୁଥିବା ଧନରେ ଝିଅ ବାହାଘରଟାଏ ହୋଇଯିବ । ଦରମାରେ ହାତ ଲଗିବନି । ଯୌତୁକ ଉପଢ଼ୌକନ ପାଇଁ ଭଲ ଭଲ ଜିନିଷ ରଖି ବାକିତକ ବିକିଦେଲେ ବାହାଘରର ଅନ୍ୟସବୁ ଖର୍ଚ୍ଚ ତୁଲେଇ ହୋଇଯିବ । ତାପରେ ସେ ସ୍ୱାମୀଙ୍କୁ କହିଲେ—ହେଇ ଶୁଣୁଛ, ତୁମେ ଆଉ ଗୋଟିଏ କଥା ଆଡ଼କୁ ବରାବର ନଜର ରଖିବ । ମା ଦୁର୍ଗା ଠାକୁରାଣୀଙ୍କ ପାଖରେ ସଞ୍ଜ ଦୀପ ଦେଲାବେଳେ ନିତି ମନାସୁଥିବ—ମାଆ ଗୋ ମାଆ, ସଚିବଙ୍କ ମୁଣ୍ଡରେ ବଦଳି ଭୂତକୁ ସବୁଦିନେ ସବାର କରେଇ ରଖିଥା ।

*